# ଅନନ୍ୟ ରେବତୀ ସବୁ

## ଭାରତୀୟ ଭାଷାର ପ୍ରଥମ କ୍ଷୁଦ୍ରଗଳ୍ପ

ସଂପାଦନା
ଡ଼କ୍‌ଟର ସନ୍ତୋଷ କୁମାର ରଥ
ସନ୍ଦୀପ କୁମାର କୁଅଁର
ସଞ୍ଜୟ କୁମାର ମିଶ୍ର



ଜିଲ୍ଲା ଲେଖକ ପରିଷଦ, ବଲାଙ୍ଗିର

# ଅନ୍ୟ ରେବତୀ ସବୁ

*ଭାରତୀୟ ଭାଷାର ପ୍ରଥମ କ୍ଷୁଦ୍ରଗଳ୍ପ*

ପ୍ରକାଶକ : ଜିଲ୍ଲା ଲେଖକ ପରିଷଦ, ବଲାଙ୍ଗିର
ଅକ୍ଷର ସଜ୍ଜା : ସ୍କ୍ରିନ୍ ଗ୍ରାଫ୍, ଟିକ୍ରାପଡ଼ା, ବଲାଙ୍ଗିର
ମୁଦ୍ରଣ : ସମଲେଶ୍ୱରୀ ପ୍ରିଣ୍ଟର୍ସ, ବଲାଙ୍ଗିର

ପ୍ରଥମ ପ୍ରକାଶନ : ଜାନୁୟାରୀ-୨୦୦୧
ଅଙ୍ଗ ସଜ୍ଜା ଓ ପ୍ରଚ୍ଛଦ : ଅନ୍ତର୍ଯ୍ୟାମୀ ମେହେର
ମୂଲ୍ୟ : ସାଦା - ଟ.୫୫/-
ବନ୍ଧାଇ -ଟ.୬୫/-

**ANYA REBATI SABU**

*First Short-Stories of Indian languages*

Published by : Zilla Lekhaka Parisad, Balangir.
D.T.P. : Screen Graph, Tikrapara, Balangir.
Printer : Samaleswari Printers, Balangir.

First Edition : January-2001
Design & Cover : Antaryami Meher
Price : Paper back Rs.55/-
Delux Rs.65/-



ଆମ ସମୟର ଅନନ୍ୟ କଥାଶିଳ୍ପୀ

**ଅଶୋକ କୁମାର ଚନ୍ଦନଙ୍କୁ ସମର୍ପିତ**

ସେଇ ଫକୀର ମୋହନ ମାନଙ୍କୁ
ଯେଉଁମାନେ ରେବତୀମାନଙ୍କୁ
ଅମରତା ପ୍ରଦାନ କରିଛନ୍ତି

# ବିନ୍ୟାସ..



ଆଧୁନିକ ଓଡ଼ିଆ ଗଳ୍ପର ଜନକ ଫକୀରମୋହନ ସେନାପତିଙ୍କ ଜନ୍ମ ଓଡ଼ିଶାର ବାଲେଶ୍ୱର ଜିଲ୍ଲାର ମଲ୍ଲୀକାଶପୁର ଗ୍ରାମରେ ୧୮୪୬ ମସିହା ମକର ସଂକ୍ରାନ୍ତି ଦିନରେ । ଓଡ଼ିଆ ଭାଷାର ସନ୍ଧିକ୍ଷଣରେ ଜନ୍ମଗହଣ କରି ଏହି ମହାନ ପୁରୁଷ ଓଡ଼ିଆ କଥା ସାହିତ୍ୟକୁ ଏକ ନୂତନ ଦିଗନ୍ତ ପ୍ରଦାନ କରିଥିଲେ ତାଙ୍କର ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ମାଧମରେ । ଗଳ୍ପ ଓ ଉପନ୍ୟାସ ବ୍ୟତିତ ବହୁ କାବ୍ୟ-କବିତା ଓ ଅନୁବାଦ ଗ୍ରନ୍ଥ ତାଙ୍କ ବହୁମୁଖୀ ପ୍ରତିଭାର ପରିଚୟ ଦିଏ । ଫକୀରମୋହନ ଓଡ଼ିଆ ସାହିତ୍ୟକୁ କେବଳ ନୂତନ ଦିଗନ୍ତ ଦେଇଥିଲେ ତା ନୁହେଁ, ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନର ଥିଲେ ସେ ସେନାପତି । ପ୍ରଥମ ଓଡ଼ିଆ ଗଳ୍ପ 'ରେବତୀ' ତତ୍‌କାଳୀନ କୁସଂସ୍କାରପୂର୍ଣ୍ଣ ସମାଜଜୀବନର ମର୍ମସ୍ପର୍ଶୀ ଚିତ୍ର ।

# ରେବତୀ

କଟକ ଜିଲ୍ଲାର ହରିହରପୁର ପ୍ରଗନା ମଧ୍ୟରେ ଗୋଟିଏ ମଫସଲ ଗ୍ରାମ, ନାମ ପାଟପୁର । ଗ୍ରାମ ମୁଣ୍ଡାମୁଣ୍ଡିରେ ଗୋଟିଏ ଘର । ଆଗିଲି ପିଛିଲି ଚାରିବଖରା, ଖଞ୍ଜା ପାଟିରୀ ଚାଳିଆରେ ଢିଙ୍କିଶାଳ, ଅଗଣା ମଧ୍ୟରେ କୂଅ, ଆଗକୁ ଦାଣ୍ଡ ଦୁଆର, ପଛକୁ ବାଡ଼ିଦୁଆର । ଦାଣ୍ଡଦୁଆର ମେଲାଘରେ ଦାଣ୍ଡଲୋକେ ବସାଉଠା କରନ୍ତି, ପ୍ରଜାମାନେ ଖଜଣା ଦେବାକୁ ଆସି ଏହିଠାରେ ବସନ୍ତି । ଶ୍ୟାମବନ୍ଧୁ ମହାନ୍ତି ଜମିଦାର ତରଫରୁ ଗ୍ରାମର କରଣ, ମାସକୁ ଦରମା ଦୁଇଟଙ୍କା, ଦରମା ଛାଡ଼ି ପାଉତି ବିଶୋଧନୀ, ବାହାଲହଣା ଇତ୍ୟାଦିରୁ ଦୁଇପଇସା ହାତପୈଠ ହୁଏ । ସବୁ ମିଶାଇଲେ ମାସକୁ ଚାରି ଟଙ୍କାରୁ ଊଣା ହେବ ନାହିଁ, ସଂସାର ଏକ ରକମ ଚଳେ । ଏକ ରକମ କିଆଁ ? ବୋଇଲେ ଭଲ ଚଳେ । ଏଇଟା ହେଲା ନାହିଁ, ସେଇଟା ଘରେ ନାହିଁ, ଏପରି କଥା ଘରର କାହାରି ମୁହଁରୁ ଶୁଣାଯାଏ ନାହିଁ । ବାଡିରେ ଶାଗ ମାଗ ଛାଡ଼ି ସଜନା ଦୁଇଗଛ । ଘରେ ଲଗାପଢ଼ିଆ ବରଷବିଆଣୀ ଗାଈ ଦୁଇଟା ବନ୍ଧା; ଦୁଧ ଟିକିଏ, ଚହ୍ଲା ମନ୍ଦାଏ ହାଣ୍ଡିଚଳେ ଲାଗିଥାଏ । ବୁଢ଼ୀ ଚଷୁ ମିଶାଇ ଘଷି ଚାଢ଼ିଦିଏ, କାଠ କିଣା ବାଧେ ନାହିଁ । ଜମିଦାର ସାଢ଼େ ତିନି ମାଣ ଜମି ଚଷି ବାକୁ ଦେଇଛନ୍ତି, ଧାନ ବଳେ ନାହିଁ କି କମେ ନାହିଁ । ଶ୍ୟାମବନ୍ଧୁଟି ବଡ଼ ସିଧାସଳଖ ଲୋକ, ପ୍ରଜାମାନେ ମାନନ୍ତି, ସୁଖ ପାନ୍ତି । ବାପରେ, ଧନ ରେ କହି କହି ଦୁଆର ଦୁଆର ବୁଲି ଖଜଣା ଅସୁଲ କରେ, କାହାରିଠାରୁ ଅନ୍ୟାୟରେ ପଇସାଟିଏ ନିଏ ନାହିଁ । ପ୍ରଜାମାନେ ଖଜଣା ଦେଇ ପାଉତି ମାଗନ୍ତି ନାହିଁ, ସେ ଚାରିଆଙ୍ଗୁଳି ତାଳପତ୍ରରେ ଖଣ୍ଡେ ପାଉତି ଲେଖି ବଳେ ଚାଳରେ ଗୁଞ୍ଜି ଦେଇଯାଏ । ଜମିଦାର ପିଆଦା ଆସିଲେ ଗାଁକୁ ଛାଢ଼େ ନାହିଁ, ଆପେ ହାତ ଓଠ ଧରି ଧୂଆଁଖିଆ ଦୁଇପଇସା ଅଣ୍ଟାରେ ଗୁଞ୍ଜିଦେଇ ବିଦା କରେ । ଶ୍ୟାମବନ୍ଧୁ ଘରେ ଖାଇବାକୁ କୁଟୁମ୍ବ ଚାରିଜଣ, ଆପେ ଦୁଇପରାଣୀ, ମା ବୁଢ଼ୀ, ଦଶ ବରଷର ଗୋଟିଏ ଝିଅ । ଝିଅର ନାମ ରେବତୀ । ଶ୍ୟାମବନ୍ଧୁ ସଞ୍ଜବେଳେ ପିଣ୍ଡାରେ ବସି 'କୃପାସିନ୍ଧୁ ବଦନ' ଗାଏ, ଆଉ ଆଉ ଭଜନ ଗାଏ, କେବେ କେବେ କାଠ ଗୁଖାଟି ଉପରେ ବଇଠାଟିଏ ଥୋଇ ଭାଗବତ ପଢ଼େ, ରେବତୀ ପାଖରେ ବସି ଶୁଣୁଥାଏ । ସେ ମୁହେଁ ମୁହେଁ ଢ଼େର ଭଜନ ଶିଖି ଗଲାଣି, ତା ପିଲା ମୁହଁକୁ ଭଜନଗୁଡ଼ିକ ଖୁବ୍ ମାନେ । ସଞ୍ଜବେଳେ ବାପା ପାଖରେ ବସି ଭଜନ ଗାଇଲେ ଗାଁର କୌଣସି କୌଣସି ଲୋକ ଆସି ଶୁଣନ୍ତି । ରେବତୀ ବାପା ପାଖରୁ ଗୋଟିଏ ଭଜନ ଶିଖିଥିଲା ସେଇଟି ଗାଇଲେ ଶ୍ୟାମବନ୍ଧୁ ବଡ଼ ଖୁସି ହୁଏ । ପ୍ରତିଦିନ ଝିଅକୁ ଗାଇବାକୁ କହେ, ରେବତୀ ଗାଏ –

କା' ଆଗେ କରିବି ଗୁହାରି ?
ତୁମ୍ଭେ ନ ଚାହିଁଲେ ନାଥ ଗରିବ ଯିବ ସରି ।
କର ବା ନକର ତ୍ରାଣ, ପଦେ ସମର୍ପିଛି ପ୍ରାଣ,
ହୃଦେ ଅଛି ତବ ନାମ ଧରି ।
ତୁମ୍ଭ ବିନା ତ୍ରିଜଗତ ଶୂନ୍ୟ ହେ ହରି ।
ଶ୍ରୀଚଳ୍ଭ କର ଜୀବନ ପ୍ରେମାମୃତ ଦାନ କରି ।

ଦୁଇ ବରଷ ତଳେ ସ୍କୁଲ ଡେ଼ଃ ଇନ୍‌ସପେକ୍ଟର ମଫସଲ ଗସ୍ତକୁ ଯିବା ସମୟରେ ପାଟପୁରରେ

ରାତିଏ ରହିଯାଇଥିଲେ । ଗ୍ରାମର ମୁଖିଆ ମୁଖିଆ କେତେ ଜଣ ଲୋକ କୁହାପୋଛା କରିବାରୁ ଦିପୋଟିବାବୁ ଓଡ଼ିଶା ବିଭାଗର ଇନ୍‌ସପେକଟରଙ୍କଠାରୁ ରିପୋର୍ଟ କରି ଗୋଟିଏ ଅପରପ୍ରାଇମେରୀ ସ୍କୁଲ ବସାଇ ଦେଇଅଛନ୍ତି । ଶିକ୍ଷକ ବେତନ ମାସକୁ ଚାରି ଟଙ୍କା । ଏହି ଚାରିଟଙ୍କା ସରକାରରୁ ମିଳେ । ଏହାଛଡ଼ା ପ୍ରତି ପିଲା ମାସକୁ ଅଣାଏ ଲେଖାଏଁ ଦିଅନ୍ତି । ଶିକ୍ଷକଟି କଟକ ନର୍ମାଲ ସ୍କୁଲ ଅବଧାନ ବିଭାଗର ଉତ୍ତୀର୍ଣ୍ଣ ଛାତ୍ର, ନାମ ବାସୁଦେବ । ନାମଟି ଯେପରି ବାସୁଦେବ । ଲୋକଟା ମଧ୍ୟ ସେହି ପରି ବାସୁଦେବ । ଟୋକାଟାର ଭିତର ବାହାର ସବୁ ସୁନ୍ଦର । ଗାଁ ମଝିରେ ଚାଲିଯିବା ବେଳେ ମୁଣ୍ଡ ଟେକି କାହାକୁ ଚାହେଁ ନାହିଁ । ବୟସ ଅନ୍ଦାଜ କୋଡ଼ିଏ । ସୁନ୍ଦର ରୂପ ଯେମନ୍ତ ଗୋଟିଏ ଚାଉଳରେ ଗଢ଼ା । ପିଲାଦିନେ ପିତ୍ତୁଳାରୋଗ ହୋଇଥିଲା । ତା ମା ମୁଣ୍ଡରେ ଚଟଲା ବୋଟଲ ମୁହଁ ଚିହ୍ନ ଦେଇଥିଲା । ସେ ଚିହ୍ନ ଆଜିଯାଏ ଅଛି । ହେଲେ ସେ ଚିହ୍ନ ତାକୁ ମାନେ । ବାସୁଦେବ ପିଲାକାଳରୁ ମା ବାପ ଛେଉଣ୍ଡ । ମାମୁଁଘରେ ରହି ମଣିଷ ହୋଇଛି । ବାସୁଦେବ ଜାତିରେ କରଣ, ଶ୍ୟାମବନ୍ଧୁ ମଧ୍ୟ କରଣ । କେବେ ପୁନେଇ ଗୁରୁବାରରେ ଘରେ ପିଠାପଣା ହେଲେ ଶ୍ୟାମବନ୍ଧୁ ପାଠଶାଳାକୁ ଯାଇ କହିଆସେ, ''ବାପା ବାସୁ ! ସଞ୍ଜବେଳେ ଟିକିଏ ଆମ ଘରକୁ ଯିବ, ତୁମ ମାଉସୀ ଡ଼ାକିଛନ୍ତି'' । ଏହିପରି ଯିବା ଆସିବାରେ ସେମାନଙ୍କ ମଧ୍ୟରେ ଗୋଟାଏ ମାୟା ଲାଗିଗଲାଣି । ରେବତୀ ବାସୁକୁ ଦେଖିଲେ କହେ, ''ଆହା, ମା ଛେଉଣ୍ଡଟି, କଣ ଖାଏ - କିଏ ତା ଖାଇବା ଦେଖୁଛି ।'' ବାସୁ ପ୍ରତିଦିନ ସଞ୍ଜବେଳେ ଯାଇ ଶ୍ୟାମବନ୍ଧୁ ପାଖରେ ଘଡ଼ିଏ ଅଧେ ବସି ଆସେ । ବାସୁକୁ ଦୂରରୁ ଦେଖିଲେ ''ବାସୁଭାଇ ଅଇଲେ, ବାସୁଭାଇ ଅଇଲେ'' ବୋଲି ରେବତୀ ପାଟି କରି ବାପକୁ କହେ । ରେବତୀ ସଞ୍ଜବେଳେ ବାପ ପାଖରେ ବସି ପ୍ରତିଦିନ ପଠିତ ପୁରୁଣା ଭଜନଗୁଡ଼ିକ ବାସୁକୁ ଶୁଣାଏ । ବାସୁକୁ ସେହି ଗୀତ ନୂଆ ନୂଆ ପରି ଲାଗେ । ଦିନେ ଏ କଥା ସେ କଥା ପଡ଼ୁ ପଡ଼ୁ ଶ୍ୟାମବନ୍ଧୁ ଶୁଣିଲେ, କଟକରେ ଗୋଟିଏ ଝିଅସ୍କୁଲ ଅଛି, ସେଠାରେ ଝିଅମାନେ ପଢ଼ନ୍ତି, ଲୁଗାସିଆଁ ଶିଖନ୍ତି । ସେହି ଦିନଠାରୁ ରେବତୀକୁ ପାଠ ପଢ଼ାଇବାକୁ ଶ୍ୟାମବନ୍ଧୁର ମନ ହେଲା ଏବଂ ଆପଣା ମନର କଥା ବାସୁଦେବକୁ କହିଲା । ବାସୁ ଶ୍ୟାମବନ୍ଧୁକୁ ପିତୃତୁଲ୍ୟ ମାନେ, କହିଲା, ''ଆଜ୍ଞା, ମୁଁ ସେହି କଥାଟା କହିବି କହିବି ହେଉଥିଲି ।'' ଦୁଇଜଣଙ୍କ ପରାମର୍ଶରେ ରେବତୀକୁ ପାଠ ପଢ଼ାଇବାର ସ୍ଥିର ହେଲା । ରେବତୀ ପାଖରେ ବସି ଶୁଣୁଥିଲା, ଦୁଇ ଡିଆରେ ଘର ଭିତରକୁ ଯାଇ ମାକୁ ଆଉ ଜେଜୀକୁ, ''ମୁଁ ପାଠ ପଢ଼ିବି, ମୁଁ ପାଠ ପଢ଼ିବି'' ଖବର ଦେଲା । ମା କହିଲେ, ''ହଉ ହଉ ପଢ଼ିବୁ ।'' ଜେଜୀ କହିଲେ, ''ପାଠ କଣ ଲୋ ? ମାଇକିନିଆ ଝିଅଟା ପାଠ କଣ ? ରନ୍ଧାବଢ଼ା ଶିଖ, ପିଠାପଣା କରି ଶିଖ, ଝୋଟିଦିଆ ଶିଖ, ଦହିମୁହାଁ ଶିଖ, ପାଠ କଣ ?''

ରାତିରେ ଶ୍ୟାମବନ୍ଧୁ ପିଣ୍ଡାରେ ଖଣ୍ଡେ ଆମ୍ବକାଠ ପିଢ଼ା ଉପରେ ବସି ଭାତ ଖାଉଛନ୍ତି, ରେବତୀ ସାଙ୍ଗରେ ବସି ଖାଉଛି । ବୁଢ଼ୀ ଆଗରେ ବସି- ଭାତପୁଞ୍ଜାଏ ଆଣ; ଡ଼ାଲିପାଣି ଟିକିଏ ପକେଇ ଯା, ଲୁଣ ଟିକିଏ ଦେ' ଇତ୍ୟାଦି କଥା ବୋହୂ ପ୍ରତି ଆଦେଶ କରୁଛନ୍ତି । କଥାରେ କଥାରେ ବୁଢ଼ୀ କହି ବସିଲେ, ''ହଁ ରେ ଶ୍ୟାମ ! ରେବୀ ପାଠ ପଢ଼ିବ - ପାଠ କଣରେ, ଚିରିଲା ଝିଅର ପାଠ କଣ ?'' ଶ୍ୟାମବନ୍ଧୁ କହିଲେ, ''ହେଉ, କହୁଛି ତ ପଢ଼ୁ । ଝଙ୍କଡ଼ ପଟ୍ଟନାୟକ ଘର ଝିଅମାନେ ଯେ ଭାଗବତ ବୋଲି ପାରନ୍ତି,

ବୈଦେହୀଶ ବିଳାସ ଛାନ୍ଦ ଗାଆନ୍ତି ।'' ରେବତୀ ଭାରି ଖପା ହୋଇ ଯାଇ ଜେଜୀକୁ ଗାଳିଦେଇ କହିଲା, ''ଯା ଲୋ ବୁଢ଼ୀ ଢୁଗୁରିଟା ।'' ତାହା ବାଦ; ଅଳି କରି ବାପାକୁ କହିଲା, ''ନାଁ ବାଁପାଁ- ନାଁ ବାଁପାଁ ମୁଁ ପାଁଠ ପଁଢ଼ିବିଁ ।'' ଶ୍ୟାମବନ୍ଧୁ କହିଲେ, ''ହଁ-ହଁ-ତୁ ପଢ଼ିବୁ ।'' ସେଦିନ କଥା ଏତିକି ।

ଚହିଁ ଆରଦିନ ଉପରଓଳି ବାସୁଦେବ ସୀତାନାଥ ବାବୁଙ୍କ ପ୍ରଥମପାଠ ଖଣ୍ଡିଏ ନେଇ ରେବତୀକୁ ଦେବାରୁ ସେ ବଡ଼ ଖୁସି ହୋଇ ବାପା ପାଖରେ ବସି କିତାପର ମୂଳ ପୁଢ଼ାଠାରୁ ଶେଷ ପୁଢ଼ାଯାଏ ଓଲଟାଇ ଓଲଟାଇ ଦେଖିଲା । ସେଥିରେ ହାତୀ, ଘୋଡ଼ା, ଗୋରୁ ଇତ୍ୟାଦିର ଛବି ଦେଖି ଭାରି ଖୁସି ହୋଇଗଲା । ରଜାମାନେ ହାତୀ ଘୋଡ଼ା ବାନ୍ଧି ଖୁସି ହୁଅନ୍ତି, କେହି ହାତୀ ଘୋଡ଼ା ଚଢ଼ି ଖୁସି ହୁଏ, ଆମ ରେବୀ ଛବିଟା ଦେଖି ଖୁସି । ରେବୀ ଧାଇଁ ଯାଇ ମା'କୁ କିତାପର ଛବି ସବୁ ଦେଖେଇଲା; ତାହା ବାଦ ଜେଜୀକୁ ଦେଖାଇଲା । ଜେଜୀ କିଞ୍ଚିତ ବିରକ୍ତ ହୋଇ କହିଲା, ''ହଁ-ଯା-ଯା ।'' ରେବୀ ତାକୁ 'ଦୁର୍ ଦୁର୍' ଗାଳି ଦେଇ ଫେରି ଆସିଲା ।

ଆଜି ଦିନଟି ଭଲ- ଶ୍ରୀପଞ୍ଚମୀ । ରେବତୀ ସକାଳୁ ବୁଡ଼ ପାରି ଗାଧୋଇ ନୂଆ ଲୁଗା ଖଣ୍ଡିଏ ପିନ୍ଧି ଘର ବାହାର ହେଉଛି, ବାସୁ ଭାଇ ଆସିଲେ କିତାପ ପଢ଼ାଇ ଦେବ । ବୁଢ଼ୀ ଭୟରେ ବିଦ୍ୟାରମ୍ଭର ଆୟୋଜନ କିଛି ହୋଇ ନାହିଁ । ବେଳ ଛ ଘଡ଼ି ସମୟରେ ବାସୁ ଯାଇ ପଢ଼େଇ ଦେଲା, ସ୍ୱରେ-ଅ, ସ୍ୱରେ-ଆ, ହ୍ରସ୍ୱ-ଇ, ଦୀର୍ଘ-ଈ, ହ୍ରସ୍ୱ—ଉ, ଦୀର୍ଘ-ଊ, ଇତ୍ୟାଦି । ପ୍ରତିଦିନ ପଢ଼ା ଚାଲିଲା, ପ୍ରତିଦିନ ସଞ୍ଜବେଳେ ବାସୁ ଯାଇ ପଢ଼େଇଦିଏ । ଦୁଇ ବରଷ ମଧ୍ୟରେ ରେବତୀ ଢ଼େର ପଢ଼ିଗଲାଣି । ମଧୁରାଓଙ୍କ ଛାନ୍ଦମାଳା ପଢ଼ାଯିବା ବେଳେ ତୁଣ୍ଡରେ ବାଟୁଳି ବାଜେ ନାହିଁ ।

ଦିନେ ରାତିରେ ଶ୍ୟାମବନ୍ଧୁ ବସି ଭାତ ଖାଇବା ବେଳେ ମା'ପୁଅ ଦୁଇ ଜଣ କଥାବାର୍ତ୍ତା ହେଲେ । ପୂର୍ବେ ବୋଧକରୁଁ କିଛି କଥା ହୋଇଥିଲା, ଆଜି ସେହି କଥାର ଉପସଂହାର ।

ଶ୍ୟାମବନ୍ଧୁ - କି ମା, ଭଲ ହେବ ନାହିଁ କି?
ବୁଢ଼ୀ - ହଁ ଭଲ ତ ହେବ; ଜାତି କଥାଟା ବୁଝିଛୁ ନା ?
ଶ୍ୟାମବନ୍ଧୁ - ମୁଁ ଆଜିଯାଏ ଆଉ କଣ ବୁଝୁଥିଲି ? ଉଚ୍ଚ କରଣ,
ଗରିବପୁଅ ହେଲେ କଣ ହେବ, ଜାତି ଭଲ ।
ବୁଢ଼ୀ - ଧନ ଦଉଲତ ନାହିଁ ବିଚାର,
ଜାତି କଥାଟା ଆଗେ ପଚାର । ଘରେ ରହିବତ ?
ଶ୍ୟାମବନ୍ଧୁ - ଘରେ ନ ରହି ଆଉ କୁଆଡ଼େ ଯିବ ?
ହଜାର ହେଲେ ମାମୁ ମାଇଁ ନା, ଆଉ କଣ ?

ରେବତୀ ପାଖରେ ବସି ଭାତ ଖାଉଥିଲା, ଏହି କଥାର ମର୍ମ ସେ କଣ ବୁଝିଲା ସେ ଜାଣେ, ମାତ୍ର ସେହି ଦିନଠାରୁ ତାହାର ଭାବଭଙ୍ଗୀ ଅନ୍ୟରକମ ଦେଖୁଅଛୁଁ । ତାକୁ ବାପା ଆଗରେ ବାସୁଭାଇ ପଢ଼ାଇଦେଲେ କିପରି ଗୋଟାଏ ଲାଜ ମାଡ଼େ; ଅକାରଣ ସକାରଣ ସବୁବେଳେ ହସ ମାଡ଼େ, ମୁଣ୍ଡ ତରକୁ ପୋତି ଦେଇ ଦୁଇ ଓଠ ବୁଜି ହସ ଲୁଚାଏ । ଏଣିକି ବାସୁ ପଢ଼ାଇ ଦେଲେ କେତେ ବେଳେ ତୁନି ତୁନି ପଢ଼େ, କେତେବେଳେ ଖାଲି ହୁଁ ହୁଁ କରେ, ପଢ଼ା ସରିଲେ ପାଟି ବୁଜି ହସି ହସି ଘରକୁ ପଳାଇଯାଏ । ପ୍ରତିଦିନ

ସଞ୍ଜବେଳେ ଦାଣ୍ଡଦୁଆର କବାଟକୁ ଧରି କାହାକୁ ଚାହିଁଥାଏ । ବାସୁ ଆସିଲେ ଘରକୁ ପଳାଏ, ପାଞ୍ଚ ଡ଼ାକରେ ବାହାରେ ନାହିଁ । ଏଣିକି ରେବତୀ ଦାଣ୍ଡକୁ କେବେ ବାହାରିଲେ ବୁଢ଼ୀ ଖପା ହୁଏ ।

ଦେଖୁଁ ଦେଖୁଁ ପଞ୍ଚମୀକୁ ପଞ୍ଚମୀ ଦୁଇ ବରଷ ହୋଇଗଲାଣି । ବିଧାତାଙ୍କ ବିଧାନ, କାହାର ଦିନ ସମାନଭାବରେ ଯିବ ନାହିଁ । ଫଗୁଣମାସିଆ ଦିନ, କାହିଁ କିଛି ନାହିଁ, ଅଚାନକ କାହୁଁ ବାଡ଼ି ଆସିଲା- ସକାଳେ ଗ୍ରାମରେ ଶୁଣାଗଲା, ଗୁମାସ୍ତା ଶ୍ୟାମବନ୍ଧୁ ମହାନ୍ତିଙ୍କୁ ବାଡ଼ି ଧରିଛି । ମଫସଲ ଗାଁରେ ବାଡ଼ି ପଡ଼ିଲେ ଚାଟି କବାଟ ପଡ଼ିଯାଏ । ବାଡ଼ି ବୁଢ଼ୀ ସଚେ ପରା ଟୋକେଇଟିଏ କାଖେଇ ଦାଣ୍ଡରେ ମନୁଷ୍ୟ ଗୋଟାଉଛି, ଏପରି ସମସ୍ତେ ମଣନ୍ତି । ଦୁଆରକୁ କାହାରି ଆସିବାର ନାହିଁ । ମାଇକିନିଆ ଦୁଇଟା କଣ କରିବେ ? ପିଲାଟା ଡ଼କା ପାଡ଼ି ଘର ବାହାର ହେଉଛି । ବାସୁଦେବ ଶୁଣି ସ୍କୁଲ ଛାଡ଼ି ଧାଇଁଲା । ଡ଼ର ନାହିଁ, ଭୟ ନାହିଁ, ଆପଣା ଶରୀର ପ୍ରତି ଭାବନା ନାହିଁ, ଶ୍ୟାମବନ୍ଧୁ ପାଖରେ ବସି ଗୋଡ଼ରେ ହାତ ବୁଲାଉଥାଏ, ପାଣି ଟୋପାଏ ଟୋପାଏ ମୁହଁରେ ଦେଉଥାଏ । ବେଳ ତିନିପ୍ରହର ସମୟରେ ଶ୍ୟାମବନ୍ଧୁ ବାସୁ ମୁହଁକୁ ଚାହିଁ ଖନେଇ ଖନେଇ କହିଲା, ''ବାଁ-ସୁ-ଏଁ-ବଁ ଆଁ-ଗିଁ-ଲା'' ବାସୁ ଭୋ ଭୋ କରି ଡ଼କା ପାରଲା । ଘରେ ଚହଲ ପଡ଼ିଗଲା । ରେବତୀ ଭୂଇଁରେ ପଡ଼ି ଗଡ଼ୁଥାଏ, ଗ୍ରାମର ଲୋକେ ଶୁଣି କହିଲେ, ହୋଇଗଲା ପରା । ଦେଖୁଁ ଦେଖୁଁ ସଞ୍ଜ-ବେଳକୁ କିଛି ନାହିଁ । କଣ କରିବେ- ବାସୁଦେବଟା କାଲିକା ପିଲା, ଆଉ ଦୁଇଟା ଭୂଆସୁଣୀ । ଗ୍ରାମର ବନ ଶେଠି ଧୋବା ଜଣେ ଜାଣିବା ଶୁଣିବା ଲୋକ, ତା ଦେହକରେ ପଚାଶ କି ଷାଠିଏ ପାର କଲାଣି । କାଲି ହେଲେ ଯିବାକୁ ହେବ, ଆଜି ହେଲେ ଯିବାକୁ ହେବ । ଲୁଗାପଟା ଦିଖଣ୍ଡ ମଧ ମିଳିବାର ଭରସା । ଗାମୁଛାଟାଏ ଅଣ୍ଟାରେ ଭିଡ଼ିଦେଇ କୁରାଢ଼ୀଟାଏ କାନ୍ଧରେ ପକାଇ ହାଜର ହୋଇଗଲା । ଗ୍ରାମର କରଣ ସେହି ଘରକ; ଶାଶୁ ବୋହୂ, ବାସୁଦେବ ତିନିଜଣ ଧରାଧରି କରି କର୍ମ ଚଳାଇଲେ । ସେ ସମୟର କଥାଗୁଡ଼ାକ ଲେଖିବାକୁ ଆଉ ହାତ ଚଳୁ ନାହିଁ । ଶ୍ମଶାନରୁ ଫେରି ଆସିବା ବେଳକୁ କୁଆଁତାରା ଉଇଁଲାଣି । ଘରେ ପଶିବା ମାତ୍ରକେ ରେବତୀ ମା ପୋଖରୀପାଣି ଗଲା, ଦେଖୁଁ ଦେଖୁଁ ଦିନ ଦ୍ୱିପ୍ରହର ବେଳେ ଗ୍ରାମରେ ହାଟ ହେଲା, ରେବତୀ ମା ନାହିଁ ।

ଦିନ ଚାଲିଯାଏ, କାହାରି ଲାଗି ଦିନ ବସି ରହେ ନାହିଁ । କାହାର ପାଲିଙ୍କି ଉପରେ ପାଟଛଟା, କାହାର ବେଢ଼ି ଉପରେ କୋରଡ଼ା । ଦିନ ଯାଉଛି ସମସ୍ତଙ୍କର, ଯିବ ସମସ୍ତଙ୍କର । ଦେଖୁଁ ଦେଖୁଁ ତିନି ମାସ କଟି ଗଲାଣି । ଶ୍ୟାମବନ୍ଧୁ ଘରେ ଦୁଇଗୋଟି ଗାଈ ଥିଲେ, ଚହବିଲ ବାକିଟଙ୍କା ସକାଶେ ଜମିଦାରଘର ଲୋକେ ଆସି ବାନ୍ଧି ଘେନିଗଲେ । ଆମ୍ଭେମାନେ ଜାଣୁଁ, ଜମିଦାରଘର ଟଙ୍କାକୁ ଶ୍ୟାମବନ୍ଧୁ ଶିବନିର୍ମାଲ୍ୟ ପରି ଜ୍ଞାନ କରେ, ଟଙ୍କାଟିଏ ଅସୁଲ ହେଲେ ଜମିଦାର କଚେରିରେ ପୈଠ ନ କରିବାଯାଏ ତାହାର ନିଦ ନାହିଁ । ମାତ୍ର ତାହା ଉପରେ ଟଙ୍କା ଥାଉ ବା ନଥାଉ, ଗାଈ ଦିଓଟି ବଢ଼ ଦୁଧିଆଳୀ, ଏ କଥା ପୂର୍ବରୁ ଜମିଦାରଙ୍କୁ ଜଣାଥିଲା । ତାହା ଛଡ଼ା ଜମିଦାର ଚଷିବାକୁ ଯେ ତିନିମାଣ ଜମି ଦେଇଥିଲେ, ତାହା ଛଡ଼ାଇ ନେଲେଣି । ହଳିଆଟା ବା ଘରେ ଆଉ କିଆଁ ରହିବ ? ଦୋଳପୂର୍ଣ୍ଣିମା ଦିନ ସେ ଛାଡ଼ିଗଲା । ବଳଦ ଦୁଇଟା ସାଢ଼େ ସତର ଟଙ୍କାରେ ବିକା ଯାଇଥିଲା, ଦୁଇଜଣଙ୍କ କ୍ରିୟାରେ ଖରଚ ଯାଇ ଯାହା ବଳିଥିଲା, ସଟାବଟା କରି ମାସେ ଚଳିଲା ଆଜି ଚାଉଳଟା ଲାଗି ମିଳୁଛଟା ବିଲାବଟା ବନ୍ଧାବନ୍ଧାରେ ଆଉ ମାସେ ଗଲା ।

ବାସୁ ଦୁଇ ଓଳି ଦୁଆରକୁ ଆସେ, ରାତି ଘଡ଼ିଏଯାଏଁ ଥାଏ, ଆଉ ନାତୁଣୀ ଶୋଇବାକୁ ଗଲେ ବସାକୁ ଯାଏ । ବାସୁ କିଛି ଟଙ୍କା ପଇସା ଦେଲେ ଆଈ ବା ନାତୁଣି କେହ ନିଅନ୍ତି ନାହିଁ । ବଳେଇ ବଳେଇ କିଛି ଦେଲେ ତାହା ଠଣାରେ ପଡ଼ିଥାଏ । ବାସୁ ଜାଣିପାରି ଆଉ କିଛି ଦିଏ ନାହିଁ । ବୁଢ଼ୀ ପାଖରୁ ଗୋଟାଏ ଦିଟା ପଇସା ନେଇ ସଉଦା କିଣିଦିଏ, ସେହି ଦୁଇପଇସାର ସଉଦାରେ ଆଠ ଦଶ ଦିନ ଚଳି ଯାଏ । ଘରର ଚାଳ ଉଡ଼ିଗଲାଣି, ଛାଉଣି ଦରକାର । ବାସୁ ଦୁଇ ଟଙ୍କାର ନଡ଼ା କିଣି ବାଡ଼ିରେ ଗଦେଇଅଛି, ଶରଣ ହେବାରୁ ଛପରିବନ୍ଧି ହୋଇପାରି ନାହିଁ । ବୁଢ଼ୀ ଏବେ ଆଉ ଦିନ ରାତି ବସି କାନ୍ଦେ ନାହିଁ । କେବଳ ସଞ୍ଜ ହେଲେ ବସି କାନ୍ଦେ । କାନ୍ଦି କାନ୍ଦି ଚଳେ ପଡ଼ି ଯାଏ, ସେହିଠାରେ ରାତି କାଟେ । ରେବତୀ ଧକେଇ ଧକେଇ ପାଖରେ ପଡ଼ିଯାଏ ବୁଢ଼ୀ ଆଖିକି ଏବେ ଭଲ ଦିଶୁନାହିଁ, ବାୟାଣି ପରି ହୋଇଗଲାଣି । ଏବେ ସେ କାନ୍ଦିବାର ଉଣା କରି ରେବତୀକୁ ଗାଳି ଦେବାକୁ ଆରମ୍ଭ କରିଛି । ଏତେ ଯେ ଦୁଃଖ, ଏତେ ଯେ ଦୁର୍ଦ୍ଦଶା ସବୁର ମୂଳ କାରଣ ରେବତୀ, ଏହା ସେ ମନ ମଧରେ ସ୍ଥିରସିଦ୍ଧାନ୍ତ କରି ସାରିଲାଣି । ରେବତୀ ପାଠ ପଢ଼ିବାରୁ ପୁଅ ମଲା, ବୋହୁ ମଲା, ହଳିଆ ଛାଡ଼ିଗଲା, ବଳଦ ବିକାଗଲା, ଜମିଦାରଘର ଗାଈ ଘେନିଗଲା । ରେବତୀ କୁଲକ୍ଷଣୀ, ସେ କୁଢ଼ଙ୍ଗୀ, ସେ ଲକ୍ଷ୍ମୀ ଛାଡ଼ୀ । ବୁଢ଼ୀ ଆଖିକୁ ଯେ ଦିଶୁ ନାହିଁ, ତାହାର କାରଣ ରେବତୀର ପାଠପଢ଼ା । ବୁଢ଼ୀ ଗାଳି ଦେବାବେଳେ ରେବତୀ ଆଖିରୁ ଦୁଇଧାରା ବହି ଯାଉଥାଏ. ଡ଼ରେ ବୁଢ଼ୀ ପାଖରେ ଛିଡ଼ା ହୋଇପାରେ ନାହିଁ । ବାଡ଼ି-ଦୁଆରେ, ନୋହିଲେ ଘରକୋଣରେ ମୁହଁ ଘୋଡ଼ାଇ କାଠଟି ପରି ବସିଥାଏ । ବାସୁ ମଧ ଦୋଷୀ; କାରଣ ରେବତୀ ତ ଏତେଦିନଯାଏ ପଢ଼ି ନ ଥିଲା, ସେହି ଆସି ସିନା ପଢ଼ାଇ ଦେଲା । ମାତ୍ର ବୁଢ଼ୀ ବାସୁକୁ କିଛି କହିପାରେ ନାହିଁ, ବାସୁ ନ ହେଲେ ଘର ଦଣ୍ଡେ ଅଚଳ, ପୁଣି ଜମିଦାରଘର ଲଟ ଛିଡ଼ି ନାହିଁ । ଜମିଦାରଘର ଲୋକ ଆସି ଆଜି ଏ ହିସାବଟା, କାଲି ସେ ହିସାବଟା ମାଗେ । ବାସୁ ନ ହେଲେ ପାଞ୍ଜି ବିଡ଼ାରୁ ପଢ଼ି ପଚର କାଢ଼ି ଦେବ କିଏ ? ବାସୁ ନ ଥିବାବେଳେ ସେ ସହଜ କଥାରେ କେବେ କେବେ ଆପଣା ମନ୍ତବ୍ୟ ପ୍ରକାଶ କରିଥାଏ । ରେବତୀ ଆଉ ଏଣିକି ସେହି ଗୃହପ୍ରାଙ୍ଗଣସଞ୍ଚାରିଣୀ ଲୀଳାମୟୀ ପ୍ରତିମା ନୁହେଁ, ତାହା ପାଟି ଆଉ କେହି ଶୁଣି ନାହିଁ, ବାପ ମା ଗଲାଦିନୁ ତାକୁ ଦାଣ୍ଡଦୁଆରେ ଆଉ କେହି ଦେଖି ନାହିଁ । କେତେ ଦିନ ଯାଏ ଭୋ ଭୋ କରି ଡ଼ାକି ପାରୁଥିଲା, ଏବେ ଆଉ ପାଟି କରି କାନ୍ଦେ ନାହିଁ, ମାତ୍ର ଦିବାରାତ୍ର ତାହାର ବଡ଼ ବଡ଼ ଆଖି ଦୁଇଟା ସାନ ସାନ ନୀଳକଇଁ ପରି ପାଣିରେ ଢ଼ଳ ଢ଼ଳ ହେଉଥାଏ । ତାହାର କ୍ଷୁଦ୍ର ପ୍ରାଣ-ଚହିଁରୁ ଅତି କ୍ଷୁଦ୍ର ମନଟି ଏକା ବେଳକେ ଭାଙ୍ଗି ଯାଇଛି । ତା ପକ୍ଷରେ ବର୍ତ୍ତମାନ ଦିନରାତି ସମାନ । ସୂର୍ଯ୍ୟରେ ଆଲୁଅ ନାହିଁ, ରାତିରେ ଅନ୍ଧାର ନାହିଁ, ସମସ୍ତ ଜଗତ୍‌ଶୂନ୍ୟ ! କେବଳ ପିତାମାତାଙ୍କ ମୂର୍ତ୍ତି ହୃଦୟ ପୂର୍ଣ୍ଣ କରିଅଛି । ମା ଏହିଠାରେ ବସିଛନ୍ତି, ବାପା ଚାଲିଯାଉଛନ୍ତି, ତାହା ଆଖିରେ କେବଳ ଏହି ଦୁଇଟା ଦିଶୁଅଛି । ବାପ ମା ମରି ଯାଇଛନ୍ତି, ଆଉ ସେମାନେ ଆସିବେ ନାହିଁ, ଏ କଥା ସେ ବିଶ୍ୱାସ କରି ପାରୁନାହିଁ । ପେଟରେ ଭୋକ ନାହିଁ, ଆଖିରେ ନିଦ ନାହିଁ, ଦିବା ନିଶି ଅନୁକ୍ଷଣ ପିତା ମାତା ଧାନ । ଜେଜୀମା ଡ଼ରରେ ଖାଇବାକୁ ବସେ । ଭୂଇଁରୁ ପ୍ରାୟ ଉଠେ ନାହିଁ । ଦେହରେ ହାଡ଼ ଚମ ଦୁଇଖଣ୍ଡ ଧୁଡ଼ଧୁଡ଼ ହେଉଛି । କେବଳ ବାସୁଦେବ ଘରକୁ ଆସିଲେ ଉଠି ବସେ, ବଡ଼ ବଡ଼ ଆଖି ଦୁଇଟାରେ ଜଳଜଳ କରି ବାସୁକୁ ଚାହିଁଥାଏ, ବାସୁ ଅନାଇଲେ ସାନ

ନିଶ୍ୱାସଟାଏ ପକାଇ ମୁଣ୍ଡ ପୋତିଦିଏ । ବାସୁ ପାଖରେ ଥିବାଯାଏ ତାହାକୁ ଚାହିଁ ରହିଥାଏ । ଚେତେବେଳେ ତାହାର ଆଉ କିଛି ଜ୍ଞାନ ନ ଥାଏ- ଆଖିରେ ବାସୁଦେବ, ଚିନ୍ତା ବାସୁଦେବ, ସମସ୍ତ ହୃଦୟଟା ବାସୁଦେବମୟ ।

ଶ୍ୟାମବନ୍ଧୁ ମରିବାର ଆଜିକୁ ହାତଗଣତିରେ ପାଞ୍ଚମାସ, ଜ୍ୟେଷ୍ଠମାସିଆ ଦିନ, ଠିକ ଦିନ ଦୁଇ ପ୍ରହର ବେଳେ ବାସୁ ଦୁଆରେ ଡ଼ାକିଲା । ଏତେବେଳେ ସେ କୌଣସି ଦିନ ଆସେନାହିଁ । ବୁଢ଼ୀ କୁଛେଇ କୁଛେଇ ଯାଇ ଦୁଆର ଫିଟାଇ ଦେଲା । ବାସୁ କହିଲା -"ଜେଜୀମା, (ବାସୁ ବୁଢ଼ୀକୁ ଜେଜୀମା ବୋଲି ବରାବର ଡ଼ାକେ) ଦିପୋଟି ଇନ୍‌ସପେକ୍ଟର ହରିହରପୁର ଥାନାରେ ବସି ପାଠଶାଳା ପିଲାମାନଙ୍କୁ ପାଠ ପଚାରିବେ, ସବୁ ସ୍କୁଲର ପିଲାମାନେ ଯିବେ, ମୋ ପାଖକୁ ଚିଠି ଆସିଛି, ମୁଁ ପିଲାମାନଙ୍କୁ ନେଇ କାଲି ସକାଳେ ଯିବି, ପାଞ୍ଚଦିନ ଲାଗିବ ।" ରେବତୀ କବାଟକଣରେ ଛିଡ଼ାହୋଇ ଶୁଣୁଥିଲା, ଲଠ୍‌କରି ବସି ପଡ଼ିଲା, ଭାଗ୍ୟେ କବାଟ ଧରିଥିଲା, ନୋହିଲେ ପଡ଼ି ଯାଇଥାନ୍ତା । ବାସୁ ପାଞ୍ଚଦିନ ସକାଶେ ଚାଉଳ, ଲୁଣ, ତେଲ, ବାଇଗଣ କିଣି ଆଣି ଅଗଣାରେ ଥୋଇ ଦେଇ ବୁଢ଼ୀକୁ ଜୁହାରଟାଏ ହୋଇ ଶନିବାର ମୁହଁ ସଞ୍ଜବେଳେ ବାହାରିଲା । ବୁଢ଼ୀ କହିଲା, " ବାପା, ଖରାରେ ବୁଲିବୁ ନାହିଁ, ଦେହ ପାଆକୁ ଚାହିଁବୁ, ବେଳରେ ଦିଟା ତୁଣ୍ଡରେ ଦେବୁ ।" ଏହା କହି ନିଶ୍ୱାସଟାଏ ପକାଇଲା । ରେବତୀ ଏକଧ୍ୟାନରେ ବାସୁକୁ ଚାହିଁ ଥାଏ, ଆଜିକା ଚାହାଁଣି ଅନ୍ୟ ରକମ । ଆଗେ ବାସୁକୁ ଚାହିଁଲେ ମୁଣ୍ଡ ତଳକୁ ପୋତି ଦେଉଥିଲା, ଆଜି ସେ ଭାବ ନାହିଁ, ଏକ ଧ୍ୟାନରେ ବାସୁକୁ ଚାହିଁ ରହିଛି । ବାସୁର ମଧ୍ୟ ଆଜି ଆଗକା ଚାହାଁଣି ନୁହେଁ । ଆଗେ ବାସୁର ଯେମନ୍ତ ଖୁବ୍ ଇଚ୍ଛା - ରେବତୀକୁ ଭଲକରି ଦେଖିବ; କିନ୍ତୁ ଅନାଇପାରେ ନାହିଁ । ଆଜି ଚାରି ଚକ୍ଷୁର ମିଳନ, ଆଖି ଫେରାଇବାକୁ କାହାରି ଆୟତ୍ତ ନାହିଁ । ବାସୁ ଚାଲି ଗଲାଣି ଆଉ ଦିନନାହିଁ, ଘର ବାହାର ଅନ୍ଧାର ପୁରିଗଲାଣି । ରେବତୀ ଯେପରି ଚାହିଁଥିଲା, ସେହିପରି ଚାହିଁଅଛି । ବୁଢ଼ୀ ଡ଼ାକିବାରୁ ତାହାର ଚେତନା ହେଲା, ଘର ବାହାର ସମସ୍ତ ଅନ୍ଧାକାରମୟ ।

ରେବତୀ ବସି ଦିନ ଗଣୁଛି, ଆଜି ଛ ଦିନ । ବାପ ମା ଗଲା ଦିନୁ ଦାଣ୍ଡ ଦୁଆର ଦେଖି ନଥିଲା, ଆଜି ସକାଳୁ ଦାଣ୍ଡ ଦୁଆରେ ଦୁଇଥର ମୁହଁମାରି ଗଲାଣି । ବେଳ ଅନ୍ଦାଜ ଛ ଘଡ଼ି, ହରିହରପୁରରୁ ସ୍କୁଲ ପିଲାମାନେ ଫେରି ଆସିବାମାତ୍ରେ ଲୋକେ ବୋଲା ବୋଲି ହେଲେ- ହରିହରପୁରରୁ ଫେରି ଆସିବା ସମୟରେ ଗୋପଳପୁରର ବରଗଛ ମୂଳରେ ପଣ୍ଡିତଙ୍କୁ ବାଡ଼ିଧଇଲା, ଚାରିଥର ପୋଖରୀପାଣି ହେଲା, ଅଧରାତି ବେଳେ ଚାଲିଗଲେ । ଗ୍ରାମଲୋକମାନେ ହାୟ ହାୟ ହେଲେ, ପୁଅ ଝିଅ ମା ମାଇକିନିଆମାନେ ପାଟିକରି କାନ୍ଦି ପକାଇଲେ । କେହି କହିଲା ଆହା କି ଉପରେ ! କେହି କହିଲା - କି ଧୀରରେ ! କେହି କହିଲା - ଦାଣ୍ଡରେ ଚାଲିଯାଉଥିବ ଯେ ମାଛିଟିକି ମର କହିବ ନାହିଁ ।

ରେବତୀ ଶୁଣିଲା, ବୁଢ଼ୀ ଶୁଣିଲା । ବୁଢ଼ୀ କାନ୍ଦି କାନ୍ଦି ତାହା କଣ୍ଠ ରୁନ୍ଧି ହୋଇଗଲା, ଆଉ କାନ୍ଦି ପାରିଲା ନାହିଁ, ଶେଷରେ ଉଠି କହିଲା "ଆହା ବାପା, ବିଦେଶକୁ ଆସି ଆପଣା ବୁଦ୍ଧିରେ ପ୍ରାଣ ହରେଇଲୁରେ ।" ଅର୍ଥାତ୍ ସେ ଦୁର୍ବୁଦ୍ଧି କରି ରେବତୀକୁ ପାଠ ପଢ଼େଇବାରୁ ମରିଗଲା, ନୋହିଲେ କେଭେ ମରି ନ ଥାନ୍ତା । ଶୁଣିଲା ବେଳୁ ରେବତୀ ଘରେ ଯାଇ ପଡ଼ିଛି, ସୋର ଶବ୍ଦ ନାହିଁ । ସେ ଦିନଟା ଗଲା, ତହିଁ ଆରଦିନ ସକାଳେ ବୁଢ଼ୀ ରେବତୀକୁ ପାଖରେ ନ ଦେଖି ପାଟିକରି ଡ଼ାକିଲା "ଲୋ

ରେବତୀ, ଲୋ ରେବି, ଲୋ ନିଅାଁ, ଲୋ ଚୁଲି ।'' ବୁଢ଼ୀ ବାୟାଣୀ ପରି ହୋଇ ଗଲାଣି, କାନ୍ଦ ବୋବାଳି ନାହିଁ, କେବଳ ରାଗରେ ଦିନ ରାତି ରେବତୀକୁ ଗାଳି । ପଡ଼ିଶା ଲୋକେ, ଦାଣ୍ଡଗଲା ଲୋକେ ଯେତେବେଳେ ଇଚ୍ଛା ସେତେବେଳେ ଶୁଣୁଛନ୍ତି 'ଲୋ ରେବତୀ, ଲୋ ରେବ, ଲୋ ନିଅାଁ, ଲୋ ଚୁଲୀ ।' ବୁଢ଼ୀ ଆଖିକୁ ଦିଶୁ ନାହିଁ, ଅଣ୍ଡାଳି ଅଣ୍ଡାଳି ଯାଇ ରେବତୀକୁ ପାଇଲା, ଡ଼ାକିଲା, ଜବାବ ନ ପାଇ ତା ଦେହରେ ହାତ ବୁଲାଇ ଦେଖିଲା, ଭାରି ଜର, ଦେହରୁ ନିଅାଁ ବାହାରୁଛି ଜ୍ଞାନ ନାହିଁ । ବୁଢ଼ୀ ଢ଼େର ବେଳଯାଏ ବସି କଣ ପାଞ୍ଚିଲା । କଣ କରିବ, କାହାକୁ ଡ଼ାକିବ । ମନ ମଧ୍ୟରେ ଜଗତ ସଂସାର ଖୋଜିଲା, ପାଖରେ କାହାକୁ ଦେଖିଲା ନାହିଁ । କିଛି ସ୍ଥିର କରି ନ ପାରି ଖପା ହୋଇ କହିଲା, ''ଯାହା ଆପଣାକିଆ, ଚହିଁକି ଇଲାଜ ଦିଅାଁ ?'' ଅର୍ଥାତ୍ ତୁ ପାଠ ପଢ଼ିବାକୁ ଜର ହେଲା, ମୁଁ କଣ କରିବି ?

ଦିନେ ଗଲା, ଦୁଇଦିନ ଗଲା, ତିନିଦିନ ଗଲା, ଚାରିଦିନ ଗଲା, ପାଞ୍ଚଦିନ ମଧ୍ୟ ଗଣଶ, ରେବତୀ ମାଟିରେ ଲାଗି ଯାଇଅଛି, ଆଖି ଫିଟାଉ ନାହିଁ, ଡ଼ାକିଲେ ଉତ୍ତର ନାହିଁ, ଉଁ ଚୁଁ ହେବାକୁ ମଧ୍ୟ ନାହିଁ । ଆଜି ଛ ଦିନ, ରେବତୀ ସକାଳୁ ଦୁଇ ଚାରି ଥର ପାଟି କଲାଣି, ବୁଢ଼ୀ ପାଟି ଶୁଣି ପାଖକୁ ଗଲା, ଦେହରେ ହାତ ବୁଲାଇ ଦେଖିଲା, ଗୋଡ଼ ହାତ ଶୀତଳ, ଡ଼ାକିଲେ ହୁଁ ହୁଁ ଜବାବ ଦେଲା । କଟମଟ କରି ମୁହଁକୁ ଚାହୁଁଅଛି, କିଛି ନ ପଚାରିଲେ ମଧ୍ୟ କେତେ କଥା କହି ପକାଉଛି । କୌଣସି କବିରାଜ ଦେଖିଲେ ''ତୃଷ୍ଣା ଦାହଃ ପ୍ରଳାପଶ୍ଚ-'' ଇତ୍ୟାଦି ଶ୍ଳୋକ ପଢ଼ି କହନ୍ତେ '' ସନ୍ନିପାତସ୍ୟ ଲକ୍ଷଣଂ ।'' ମାତ୍ର ବୁଢ଼ୀ କିଛି ଖୁସି ହେଲା । ଦେହରେ ତାତି ନାହିଁ; କଥା କହୁ ନ ଥିଲା, ପାଟି ଫିଟାଇଲାଣି, ପାଣି ପିଇବାକୁ ମାଗିଲାଣି, ଛ ଦିନ ହେଲା ଜିଭରେ ପାଣି ଟୋପାଏ ବାଜି ନାହିଁ ଚାରିଟା ପଥି ପେଟରେ ପଡ଼ିଲେ ଝିଅଟା ଉଠି ବସିବ । ''ତୁ ଶୋଇଥା ମୁଁ ଚାରିଟା ପଥି ରାନ୍ଧି ଆଣେଁ,'' ଏହା କହି ବୁଢ଼ୀ ବାହାରକୁ ବାହାରି ଆସିଲା । ପଥି ରାନ୍ଧିବ କଣ ? ଘରେ ପାଛିଆ କୁଣ୍ଡେଇ ହାଣ୍ଡି ଆଟିକା ସବୁ ଖୋଜିଲା; ମୁଠାଏ ଚାଉଳ ନାହିଁ । ନିଶ୍ୱାସଟାଏ ପକାଇ ଘଡିଏ ବସିଲା । ବାସୁ ପାଞ୍ଚ ଦିନକୁ ଚାଉଳ ଡ଼ାଲି କିଣି ଦେଇ ଯାଇ ଥିଲା, ସେଥିରେ ଦଶ ଦିନ କିଅାଁ ଚଳିଗଲା, ବୁଢ଼ୀର ଦୃଷ୍ଟି ଶକ୍ତି ଥିଲେ ବୁଝି ପାରିଥାନ୍ତା । ବସି ବିଚାର କଲେ ବୁଦ୍ଧି ଦିଶେ । ଘରେ କଂସା ବାସନ କିଛି ନାହିଁ; ହାତରେ ଗୋଟାଏ କଣା ଡ଼ାଳ ପଡ଼ିଲା, ସେହିଟା ଧରି ହରି ସା ଦୋକାନକୁ ବାହାରିଲା । ହରି ସା ଘର ଗ୍ରାମ ମଝିରେ, ତାହାର ରୀତିମତ ଦୋକାନ ନାହିଁ, ଚାଉଳ, ଡ଼ାଲି, ଲୁଣ, ତେଲ ରଖିଥାଏ; କୌଣସି ଦିନ ବିଦେଶୀ ଲୋକ ପହଞ୍ଚି ଗଲେ କିଣନ୍ତି କେବେ ହେଲେ ଗ୍ରାମଲୋକଙ୍କର କିଛି ଦରକାର ହେଲେ କିଣନ୍ତି । ବୁଢ଼ୀ ଡ଼ାଳଟିଏ ଧରି ହରି ସା ଦୁଆରେ ପହଞ୍ଚିଲା । ହରି ସା ବୁଢ଼ୀ ହାତରେ ଡ଼ାଳଟି ଦେଖି ଅର୍ଥଟା ବେଶ ବୁଝିଗଲା । ବୁଢ଼ୀ ଆପଣାର ଅଭିପ୍ରାୟ ଜଣାଇବାରୁ ହରି ଡ଼ାଳଟା ହାତରେ ଧରି ଚାରି ପାଖ ଦେଖି କହିଲା; ''ନାହିଁ ନାହିଁ ମୋ ପାଖରେ ଚାଉଳ ନାହିଁ; ଆଉ ଏହି କଣା ଡ଼ାଳଟା ରଖି କିଏ ଚାଉଳ ଦେବ ?'' ହରି ଘରେ ଯେ ଚାଉଳ ନ ଥିଲା ତାହା ନୁହେଁ, ଦେବାକୁ ମଧ୍ୟ ଇଚ୍ଛା; ତେବେ ଶସ୍ତାରେ ନେବାର କଥା । ଚାଉଳ ନଥିବାର ଶୁଣି ବୁଢ଼ୀ ମୁଣ୍ଡରେ ତ ବଜ୍ର ପଡ଼ିଲା । କଣ କରିବି, ଝିଅଟା ଜରରୁ ଉଠିଛି, ତା ମୁହଁରେ କଣ ଦେବି ? ଘଡ଼ିଏ ବସିଗଲା; ବେଳ ବୁଡ଼ିଆସିଲାଣି; ହରିକୁ ଦୁଇଥର ଅନାଇଲା । ଯାଏଁ ଝିଅଟା କଣ କରୁଛି ଦେଖେଁ । ଡ଼ାଳଟି ଧରି ଉଠୁଛି, ହରି କହିଲା, ''ଦିଅ ଦିଅ, ଡ଼ାଳଟା ଦିଅ, ଦେଖେଁ ଘରେ କଣ ଅଛି ।'' ହରି ଡ଼ାଳଟା ରଖି ଚାରି ମାଣ ଚାଉଳ, ଅଧମାଣେ ଡାଇ, କିଛି ଲୁଣ ଦେଲା । ବୁଢ଼ୀ ଚାରି ଛ

ଜାଗା ବସି ଉଠି ଘରେ ଆସି ପହଞ୍ଚିଲା । ଏ ପର୍ଯ୍ୟନ୍ତ ବୁଢ଼ୀ ଦାନ୍ତରେ ଦାନ୍ତ କାଠି ବାଜି ନାହିଁ, ଦେହ ମନ କଥା କଣ କହିବୁଁ ? ଘରେ ପହଞ୍ଚି ରେବତୀକୁ ଡ଼ାକିଲା । ତାହାର ବିଶ୍ୱାସ, ରେବତୀ ଭଲ ହୋଇଗଲାଣି, ପାଣି କାଢ଼ି ଦେବ, ସେ ଭାତ ରାନ୍ଧିବ । ରେବତୀ ଜବାବ ନ ଦେବାରୁ ସେ ଭାରି ଖପା ହୋଇ ଯାଇ ଡ଼ାକିଲା, ''ଲୋ ରେବତୀ, ଲୋ ରେବି, ଲୋ ନିଆଁ, ଲୋ ଚୁଲି !'' ଜବାବ ନାହିଁ ।

ଏଣେ ରେବତୀର ସନ୍ନିପାତ ରୋଗ କ୍ରମଶଃ ବଢୁଛି; ଭୟାନକ ଯନ୍ତ୍ରଣା, ଦେହ କ୍ରମଶଃ ଶୀତଳ ହେଉଛି, ଜିଭ ଶୁଖିଲାଣି, ଭୟଙ୍କର ପିପାସା, ଜିଭଟା ଯେମନ୍ତ ଭିତରକୁ ଟାଣି ଯାଉଛି । ଥଣ୍ଡା ଜାଗାକୁ ଯିବାର ଇଚ୍ଛା, ଘରଯାକ ଗଡ଼ି ଗଡ଼ି, ବାହାରକୁ ଆସିଲା, ସୁଖ ଲାଗିଲା ନାହିଁ । ବାଡ଼ି ଦୁଆରକୁ ଯାଇ ପିଣ୍ଡାରେ ବସିଲା । ଦିନ ଶେଷ ହୋଇ ଆସିଲାଣି, ଖୁବ୍ ପବନ ବହୁଛି, ବାଡ଼କୁ ଆଉଜି ବସିଲା । ବାଡ଼ିଯାକ ଅନାଇଲା, ଏହି ବାପା ଗଲା ବରଷ କଦଳୀ ଲଗାଇଥିଲେ, ଭଣ୍ଡା ବାହାରିଲାଣି, ଦୁଇ ବରଷ ତଳେ ମା, ଗୋଟିଏ ପିଜୁଳି ଗଛ ବାଡ଼ିରେ ରୋଇଥିଲେ, ରେବତୀ ଧାଇଁ ଧାଇଁ କୂଅରୁ ଡ଼ାଳେ ପାଣି ସେ ଗଛରେ ଦେଇଥିଲା, ସେ ଗଛ କେଡ଼େଟାଏ ହେଲାଣି, ଫୁଲ ଧରିଲାଣି । ସେ ଗଛ ଦେଖି ତା ମା ମନରେ ପଡ଼ିଲେ । ବୁଦ୍ଧି ସ୍ଥିର ନାହିଁ, ମନ ଚଞ୍ଚଳ, ଲଗାଲଗି କିଛି କଥା ମନରେ ପଡୁ ନାହିଁ; ମାତ୍ର ମା'ଟାର ଆନନ୍ଦମୟୀ ମୂର୍ତ୍ତି ଆଉ ମନକୁ ଛାଡୁନାହିଁ । ସଞ୍ଜ ଗଡ଼ି ଗଲାଣି, ଗଛ ମୂଳରୁ ଡ଼ାଳ ଉଡ଼ାଳରୁ ଅନ୍ଧାରଗୁଡ଼ାକ ବାହାରି ବାଡ଼ି ପୂରି ଗଲାଣି, ଆଉ କିଛି ଦିଶୁନାହିଁ । ଆକାଶକୁ ଚାହିଁଲା, ପହରିକିଆ ତାରାଟିରୁ ଧକ୍ ଧକ୍ ହୋଇ କିରଣ ବାହାରୁଛି । ଏକଧ୍ୟାନରେ ରେବତୀ ସେହି ତାରାକୁ ଚାହିଁଅଛି, ଆଖିରେ ଆଉ ପଲକ ପଡୁନାହିଁ । ତାରାର ଆକାର କ୍ରମଶଃ ବଢ଼ି ଯାଉଛି, ଚକ୍ରପରି ଆକାର ହୋଇଗଲାଣି, ଆହୁରି ବୃଦ୍ଧି, କ୍ରମଶଃ ଉଜ୍ଜ୍ୱଳ । ଆହା! ଏ କି ମୂର୍ତ୍ତି ତାରା ମଧ୍ୟରେ ? ଶାନ୍ତିଦାୟିନୀ ପ୍ରେମମୟୀ ଆନନ୍ଦମୟୀ ମାତାଙ୍କର ଅଭୟା ମୂର୍ତ୍ତି ବସି ସ୍ନେହରେ କୋଳକୁ ନେବା ସକାଶେ ଡ଼ାକୁଛନ୍ତି । ମା ଦୁଇଗୋଟି କିରଣ ହସ୍ତ ବଢ଼ାଇ ଦେଲେ । ସେହି କିରଣ ଦିଓଟି ଆସି ଦୁଇ ଚକ୍ଷୁ ସ୍ପର୍ଶ କରି ହୃଦୟରେ ପ୍ରବେଶ କଲା । ସେହି ଅନ୍ଧକାର ମଧ୍ୟରେ ଆଉ କୌଣସି ଶବ୍ଦ ନାହିଁ, କେବଳ ନିଶ୍ୱାସ ଶବ୍ଦ । ସେ ଶବ୍ଦ କ୍ରମଶଃ ପ୍ରବଳ, ଖୁବ୍ ଦୀର୍ଘନିଶ୍ୱାସ, ଶେଷରେ ମା ମା, ଦୁଇଥର ଅସ୍ପଷ୍ଟ ଶବ୍ଦ ଶୁଭିଲା । ବାଡ଼ି ନିସ୍ତବ୍ଧ, ନୀରବ ।

ଏଣେ ବୁଢ଼ୀ ଘୁଷୁରି ଘୁଷୁରି ଯାଇ ରେବତୀ ଶୋଇବା ଜାଗା ଦେଖିଲା, କେହି ନାହିଁ । ଘରଯାକ, ବାହାର ଅଗଣା, ଢ଼େଙ୍କିଶାଳ, ଢ଼େଙ୍କି ଲାଞ୍ଜ କାହିଁ ନାହିଁ । ମନେ କଲା, ଜର ଭଲ ହୋଇ ଗଲାଣି, ବାଡ଼ିରେ ବୁଲୁଥିବ । ସେହି ଡ଼ାକ– 'ଲୋ ରେବତୀ, ଲୋ ରେବି, ଲୋ ନିଆଁ, ଲୋ ଚୁଲି !' ବାଡ଼ି ଦୁଆରକୁ ଗଲା, ଅଣ୍ଟାଳି ଅଣ୍ଟାଳି ପିଣ୍ଡାକୁ ଉଠିଲା । ପିଣ୍ଡାଟି ଭୂମିଠାରୁ ଦୁଇହାତ ଉଚ୍ଚ, ହାତେ ଚଉଡ଼ା ।

''ମଲା, ତୁ ଏଇଠି ବସିଛୁ ?'' ଦେହରେ ହାତ ଦେଇ ବୁଢ଼ୀ ପ୍ରଥମେ ଚମକି ପଡ଼ିଲା, ଆଉଥରେ ଭଲକରି ଗୋଡ଼ଠାରୁ ମୁଣ୍ଡଯାଏ ହାତ ବୁଲାଇଲା, ନାକରେ ହାତଦେଇ ଗୋଟାଏ ଉକଟ ଶବ୍ଦ କଲା, ସଙ୍ଗେ ସଙ୍ଗେ ପିଣ୍ଡା ତଳେ ଦୁଲଦାଲ୍ ଶବ୍ଦ ।

ଶ୍ୟାମବନ୍ଧୁ ମହାନ୍ତି ଘରର କୌଣସି ପ୍ରାଣୀକୁ ଜଗତରେ ଆଉ କେହି ଦେଖି ନାହାନ୍ତି । ପଡ଼ୋଶୀମାନେ ରାତି ପହରକ ସମୟରେ ଶେଷ ଶବ୍ଦ ଶୁଣିଥିଲେ -

''ଲୋ ରେବତୀ, ଲୋ ରେବ, ଲୋ ନିଆଁ, ଲୋ ଚୁଲି !''



ତେଲଗୁ ସାହିତ୍ୟର ପ୍ରଥମ କାହାଣୀ 'ଦିଦ୍ଦୁବାଟୁ' ର ଲେଖକ ଶ୍ରୀ ଗୁରଜାଡ଼ା ଅପ୍ପାରାଓଙ୍କ ଜନ୍ମ ୧୮୬୨ ମସିହା ନଭେମ୍ବର ୨୧ ତାରିଖରେ । ଶ୍ରୀ ଅପ୍ପାରାଓଙ୍କ ଆବିର୍ଭାବ ତେଲଗୁ ସାହିତ୍ୟକୁ ଦେଇଥିଲା ଏକ ନୂତନ ଦିଗ୍‌ଦର୍ଶନ । ଚେତନା ଓ ଅନୁଭବ ସ୍ତରରେ ଅଭିବ୍ୟକ୍ତିର ଏକ ସମର୍ଥ ମାଧ୍ୟମ ଭାବରେ ତାଙ୍କର ଗଳ୍ପ 'ଦିଦ୍ଦୁବାଟୁ' (ସମୁଚିତ ଶିକ୍ଷା) ରେ ହିଁ ଆରମ୍ଭ ହୋଇଥିଲା ତେଲଗୁ ଗଳ୍ପସାହିତ୍ୟ । ଗଳ୍ପ ଛଡ଼ା କବିତା, ନାଟକ ଇତ୍ୟାଦି ମଧ୍ୟ ତାଙ୍କ ଦ୍ୱାରା ରଚିତ ଓ ସର୍ବଜନାଦୃତ ।

# ସମୁଚିତ ଶିକ୍ଷା

'କବାଟ ଖୋଲ ! କବାଟ ଖୋଲ !'

କିଂତୁ କବାଟ ଖୋଲାହେଲା ନାହିଁ । ସେ ଚୁପ୍‌ଚାପ ଛିଡ଼ା ହେଲେ ଗୋଟିଏ ମିନିଟ୍ ।

ଉଚର ଘରେଥିବା କାଂଥଘଂଟାରେ ରାତି ଗୋଟାଏ ହେବାର ସୂଚନା ।

''.........ଆଜି ସତରେ ମୋର ଖୁବ୍ ଡ଼େରି ହେଲା । ମୋର ବୁଦ୍ଧି ଆଜି ଯେମିତି ଘାସ ଖାଇବାକୁ ଯାଇଥିଲା । କାଲିଠୁ ମୁଁ ଠିକ୍ ସମୟରେ ଫେରିବି । ନାଚ ବିରୋଧୀ ଆଂଦୋଳନର ପୁରୋଧା ହେବା ସତ୍ୱେ ମୋର କଣ ସେ ନାଚବାଲୀ ପାଖକୁ ଯିବାର ଉଚିତ୍ ଥିଲା ? ତାର ଗୀତ ଶୁଣୁଶୁଣୁ ମୋ ମନଟି କେଜାଣି କୁଆଡ଼େ ଚାଲିଗଲା । ଘରକୁ ଫେରିବାର ନାଁ ବି ଧରୁ ନଥିଲା । ତାର ସୌଂଦର୍ଯ୍ୟରେ ବି ସେ ଟିକେ ବିମୁଗ୍‌ଧ ହୋଇଗଲା । କେତେ ଖରାପ କଥା ! ସାଧାରଣ ନୀଚ ଲୋକଟି ପରି ସେଠି ଗୀତ ସରିବାଯାଏ ମୋର କଣ ବସିରହିବା ନିହାତି ଦରକାର ଥିଲା ? କଣ ବା ଦରକାର ଥିଲା କିଛି ନା କିଛି ବାହାନା କରି ତା ସହିତ କଥାହେବା ? ଦେଖ, ମୁଁ କାନଧରୁଛି, ଗୀତ ଶୁଣିବାପାଇଁ ମୁଁ ଆଉ କେବେ ତା ପାଖକୁ ଯିବି ନାହିଁ । ମୁଁ ପ୍ରତିଜ୍ଞା କରି କହୁଛି ।''

ଯୋରରେ ପାଟି କଲେ ତ କମଳିନୀ ଉଠି ପଡ଼ିବେ । ଧିରେ ଧିରେ କବାଟ ଖଟ୍ ଖଟ୍ କରି ରାମୁଭୃକୁ ଉଠାଇ ପାରିଲେ ତ ଚୁପ୍‌ଚାପ୍ ଭଦ୍ରଲୋକ ପରି ମୁଁ ତା ପାଖରେ ଶୋଇ ପଡ଼ିବି... ।

ଗୋପାଳ ରାଓ ଯେପରି କବାଟରେ ହାତ ଦେଇଛଂତି କବାଟଟି ଖୋଲିଗଲା । ଆରେ, ଏ କଣ ? ଭାବୁ ଭାବୁ କବାଟଟି ଖୋଲିଗଲା ? ବାଟ ଘରକୁ ଯାଇ, ଆସ୍ତେ ଆସ୍ତେ ଶୋଇବାଘରକୁ ଗଲେ ଗୋପାଳରାଓ । ଭିତର ଅଂଧାର ହୋଇଥିଲା । ଚିଂତାକଲେ, କମଳିନୀ ଶୋଇଥିବେ ନା ଚେଇଁଥିବେ ? ପକେଟରୁ ଦିଆସିଲି କାଢ଼ି ଜଳାଇଲେ । ଖଟରେ କମଳିନୀ ନଥିଲେ । ସେ ସ୍ତଂବିଭୁତ ହୋଇଗଲେ । କାଠିଟିକୁ ତଳେ ପକାଇ ଦେଲେ । କୋଠରୀଟି ପୁଣି ଅଂଧାର । ତାଂକ ମନଟା ବି ଅଂଧାର ହୋଇଗଲା । କେତେ ପ୍ରକାରର ଆଶଂକା ଓ ଗୁଡ଼ାଏ ଦୁର୍ଭାବନାରେ ମନଟି ପୁରି ଉଠିଲା । ସେ ବ୍ୟାକୁଳ ହେଇ ଉଠିଲେ । ନିଜର ଅବୁଝାପଣଲାଗି ଅଥବା କମଳିନୀଙ୍କ ଅନୁପସ୍ଥିତି ଯୋଗୁଁ ତାଂକୁ ଚିଡ଼ିଚିଡ଼ା ଲାଗିଲା । ମନରେ ରାଗ ବି ଆସୁଥିଲା । ସେ ବାହାରକୁ ଚାଲି ଆସିଲେ । ଦ୍ୱାର ପାଖକୁ ଆସି ଡ଼ାକିଲେ । ନା ଚାକରାଣୀ ନା ରାମୁଭୃ କେହିହେଲେ ଉତ୍ତର ଦେଲେ ନାହିଁ । ସେମାନଙ୍କୁ ଫାଶୀ ହେବା ଦରକାର । ଗୋପାଳରାଓ ଚିତ୍କାର କରି ଉଠିଲେ ।

ପୁଣି ଶୋଇବା କୋଠରୀକୁ ଫେରିଗଲେ, ଲଣ୍ଠନ ଜଳାଇଲେ ଓ କୋଠରୀକୁ ନିରୀକ୍ଷଣ କଲେ । କମଳିନୀ କେଉଁଠି ହେଲେ ଦେଖାଯାଉ ନଥିଲେ । ଅଗଣାକୁ ଯାଇ ବାହାରକୁ ଯିବାର ଦ୍ୱାର ଖୋଲି ଦେଖିଲେ ରାମୁଭୃ ରାସ୍ତା ମଝିରେ ଠିଆହୋଇ ଆକାଶକୁ ମୁହଁକରି ଚୁରୁଟ ପିଉଛି । ଯେପରି ସେ ତାରାମାନଙ୍କୁ ବି ଗଣୁଛି । ଗୋପାଳ ରାଓ ରାଗିଗଲେ ।

- 'ରାମୁଭ୍ଭ, ଏ ପଟେ ଆ' । ପାଟି କରି ଉଠିଲେ । ରାମୁଭ୍ଭ ଚମକି ପଡ଼ି ଚୁରୁଟ ଫିଙ୍ଗି ଦେଲା ଓ ଡରି ଡରି କହିଲା, 'ଯାଉଛି ଆଜ୍ଞା ।'

- ମା କୁଆଡ଼େ ଗଲେ ?

- ଆଜ୍ଞା ମା ତ ଆମଘରେ ଅଛି ।

- ଆରେ ଗଧ ! ତୋ ମା ନୁହେଁ, ମୋ ସ୍ତ୍ରୀ କଥା ପଚାରୁଛି ।

- ଓ, ସେଇ ମା କଥା ପଚାରୁଛଂତି ? ନିଜ କୋଠରୀରେ ଶୋଇଥିବେ ।

- ନା, ସେ ଘରେ ନାହାଂତି ।

ଏକଥା ଶୁଣି ରାମୁଭ୍ଭ ସ୍ତବ୍ଧ ହୋଇ ରହିଗଲା । ସେ ଘର ଭିତରେ ପାଦଦେବା କ୍ଷଣି ଗୋପାଳରାଓ ତାକୁ କୋର୍‌ରେ ଦୁଇବିଧା ମାରିଲେ । 'ମରିଗଲି, ମରିଗଲି ବାବୁଜୀ' କହି ରାମୁଭ୍ଭ ମାଟି ଉପରେ ଗଡ଼ି ପଡ଼ିଲା ।

ଗୋପାଳରାଓଙ୍କ ମନଟା ଖୁବ୍ ନରମ । ସଂଗେ ସଂଗେ ନିଜ ବ୍ୟବହାର ପାଇଁ ସେ ଅନୁତାପ କଲେ । କ'ଣ କଲେ ସେ ? ରାମୁଭ୍ଭକୁ ହାତ ଭରା ଦେଇ ଉଠାଇଲେ । ତା ପିଠି ଆଉଁସି ଦେଲେ ଓ ଘର ଭିତରକୁ ଡାକି ନେଲେ । ସେ ଖୁବ୍ ବିଚଳିତ ଥିବା ସତ୍ତ୍ୱେ ଚୌକିରେ ବସି ଯଥା ସମ୍ଭବ ନରମଗଳାରେ ପଚାରିଲେ, 'ଆରେ ରାମୁଭ୍ଭ, ସେ କୁଆଡ଼େ ଗଲେ ?'

- ମୁଁ ତ ନିଜେ ଖୁବ୍ ଅବାକ୍ ହେଉଛି, ଆଜ୍ଞା !

- ତାଂକ ମା ଘରକୁ ଚାଲି ଯାଇ ନାହାଂତି ତ ?

- ଠିକ୍ କହିଲେ ଆଜ୍ଞା, ସେମିତି ବି ହୋଇଥାଇ ପାରେ । ନାରୀମାନେ ପାଠ ଶାଠ ପଢ଼ିଲେ ଏମିତି ତ ହୁଏ ।

- ଆରେ ମୂର୍ଖ ! ଲେଖା-ପଢ଼ାର ମୂଲ୍ୟ ତୋତେ କ'ଣ ଜଣା !

ଏତକ କହିସାରି ସେ ପୁଣି ମୁଣ୍ଡରେ ହାତ ଦେଇ ଭାବିବାକୁ ଲାଗିଲେ, କମଳିନୀ କୁଆଡ଼େ ଯାଇଥାଇ ପାରନ୍ତି ? ହଠାତ୍ ଟେବୁଲ ଉପରେ ରଖାହୋଇଥିବା କମଳିନୀଙ୍କ ହାତଲେଖା ଚିଠି ଉପରେ ତାଙ୍କର ନଜର ପଡ଼ିଲା । ତାକୁ ତରତର ଭାବରେ ଆଣି ପଢ଼ିବାରେ ଲାଗିଲେ ।

'ମହାଶୟ.........'

- ବାଃ ରେ ଦୁନିଆଁ ! 'ପ୍ରିୟତମ' ଜାଗାରେ 'ମହାଶୟ' !

- ଦୁନିଆଁକୁ କ'ଣ ହେଲା, ଆଜ୍ଞା ?

- ତୋ ମୁଣ୍ଡ !ତୁ ଚୁପ୍ କର !!

'ମହାଶୟ', ପୁଣି ପଢ଼ିବାକୁ ଲାଗିଲେ, "ଗତ ଦଶଦିନ ହେଲା ଆପଣ କେତେ ରାତିରେ ଘରକୁ ଫେରୁଛନ୍ତି । ମୁଁ ଆଦୌ ଜାଣି ପାରୁନାହିଁ । କେଉଁସି ସଭା-ସମିତିକୁ ଯାଇଥିବାର କଥା ଆପଣ ଯଦିଓ କହନ୍ତି, ଦେଶର କଲ୍ୟାଣ ଲାଗି ରାତିରେ ନ ଶୋଇ କୌଣସି ଆନ୍ଦୋଳନରେ ଭାଗ ନେବା କଥା କହନ୍ତି, ତଥାପି ମୋର ସଖୀମାନଙ୍କ ମାଧ୍ୟମରେ ସତ କଥାଟି କ'ଣ ମୁଁ ଜାଣି ଯାଇଛି । ଘରେ ମୁଁ ଥିଲି ବୋଲି ଆପଣଙ୍କୁ ମିଛ କହିବାକ ମନଥିଲା । ମଁ ଯଦି ମୋର ମା ଘରକ ଚାଲିଯାଇଛି ତେବେ ଆପଣଙ୍କ ଅବାଧ

ସ୍ୱାଧୀନତା ମିଳିଯିବ । ମିଛ କହିବାକୁ ବି ପଡ଼ିବ ନାହିଁ । ଭାବିଲି, ପ୍ରତିଦିନ ଆପଣଙ୍କ ମୁହଁରୁ ମିଛ କଥା ବିନା ଦ୍ୱିଧାରେ ବାହାର କରିବା ଓ ଆପଣଙ୍କ ସ୍ୱାଧୀନତାରେ ବାଧାଦେବା କ'ଣ ଠିକ୍ କଥା ? ପତ୍ନୀ ଭାବରେ ସେ କ'ଣ ମୋର କର୍ତ୍ତବ୍ୟ ? ତେଣୁ ଆଜି ରାତିରେ ହିଁ ମୁଁ ମୋ ମା ଘରକୁ ଚାଲିଯାଉଛି । ଆପଣ ସୁଖରେ ରହନ୍ତୁ । ମୋ ପାଇଁ ଯଦି ଆପଣଙ୍କ ହୃଦୟରେ କିଛି ଦରଦ ଥିବ, ତେବେ ଭବିଷ୍ୟତରେ କେବେ ମୋ ସହିତ ସମ୍ପର୍କ ସ୍ଥାପନ ନିଶ୍ଚୟ କରିବେ ।'

ଚିଠି ପଢ଼ିସାରି ଗୋପାଳରାଓ ଏକ ଦୀର୍ଘଶ୍ୱାସ ନେଲେ ଏବଂ କହିଲେ -ମୁଁ ନିପଟ୍ ପଶୁଟିଏ !

- କ'ଣ କହିଲେ ଆଜ୍ଞା ?

- ମୁଁ-ଏକ-ନିପଟ-ପଶୁ ।

ରାମୁଡୁ ଖୁବ୍ କଷ୍ଟରେ ନିଜ ହସକୁ ଚାପି ରଖି ପାରିଲା ।

- ସେ କେତେ ସରଳ ଥିଲେ ! କେତେ ଉଦାର ଥିଲେ !! କେତେ ପାଠ-ଶାଠ ଜାଣିଥିଲେ !!! ମୋର ଦୁର୍ବ୍ୟବହାରର ଶାସ୍ତି ମୋତେ ଠିକ୍ ମିଳିଲା ।

- ମା କ'ଣ ଲେଖିଛନ୍ତି ଆଜ୍ଞା ?

- ସେ ତାଙ୍କ ଘରକୁ ଚାଲିଯାଇଛନ୍ତି । ମୋତେ ତ ଆଶ୍ଚର୍ଯ୍ୟ ଲାଗୁଛି ସେ ତୋତେ କିଛି ନ କହି କେମିତି ଚାଲି ଯାଇ ପାରିଲେ ।

ରାମୁଡୁ ଦି'ପାଦ ପଛକୁ ଫେରିଯାଇ କହିଲା, -ମୋର ଆଖିଟିକେ ଲାଗିଯାଇଥିଲା ବାବୁ ! ସେ ବୋଧହୁଏ ଅଭିମାନରେ ଚାଲି ଯାଇଛନ୍ତି । ଆଜ୍ଞା, ଆପଣ ରାଗିବେ ନାଇଁ ଯଦି କଥା ପଦେ କହିବି ? ସ୍ତ୍ରୀ ଟିଏ ହୋଇ ଏତେ ସାହାସ ? ଆପଣଙ୍କୁ ନ ପଚାରି ମା ଘରକୁ ଚାଲି ଯାଇ ପାରୁଛନ୍ତି ? ଏଇ ତିରିଲା ଜାତିକୁ ଆଜ୍ଞା, ଆପଣ ଯାହା କହନ୍ତୁ ମାଡ଼ ଦ୍ୱାରା ହିଁ ସାବାଡ଼ କରା ଯାଇପାରେ, କଥାବାର୍ତ୍ତା ଦ୍ୱାରା ନୁହେଁ । କିନ୍ତୁ ଆପଣ ତ ମା ଙ୍କୁ ପାଠପଢ଼ା ଶିଖାଇ ମୁଣ୍ଡ ଉପରେ ବସାଇଛନ୍ତି । ଆପଣଙ୍କ କଥା ମାନିବେ ବା କାହିଁକି ?

ଗୋପାଳରାଓ ଆଉ ଦଂଭଧରି ପାରିଲେ ନାହିଁ ।

-ଆରେ ମୂର୍ଖ, ଈଶ୍ୱରଙ୍କ ସୃଷ୍ଟିରେ ଯଦି କିଛି ମୂଲ୍ୟବାନ ପଦାର୍ଥ ଅଛି ତାହେଲେ ସେ ହେଉଛି ପଢ଼ିଲେଖି ଜାଣିଥିବା ସ୍ତ୍ରୀ ଲୋକ । ମହାଦେବ ନିଜ ଶରୀରର ଅର୍ଦ୍ଧେକ ନିଜ ସ୍ତ୍ରୀ ପାର୍ବତୀଙ୍କୁ ଦାନ କରିଥିଲେ । ଇଂରେଜମାନେ ନିଜ ସ୍ତ୍ରୀକୁ 'ବେଟର ହାଫ୍' ବୋଲି କୁହନ୍ତି । ସ୍ତ୍ରୀ ମାନଙ୍କ ସ୍ଥାନ ସ୍ୱାମୀ ମାନଙ୍କଠାରୁ ବି ଉଚ୍ଚରେ । ବୁଝିଲୁ ମୂର୍ଖ ?

- ମୁଁ କିଛି ହେଲେ ବୁଝି ପାରିଲି ନାହିଁ ଆଜ୍ଞା ।

ରାମୁଡୁ ତଥାପି ନିଜ ହସକୁ ଚାପି ରଖି ପାରୁ ନଥିଲା ।

- ଆରେ ରାମୁଡୁ, ତୋ ଝିଅ ସ୍କୁଲ ଯାଉଛି ନା ନାହିଁ ? ବିଦ୍ୟାର ମହତ୍ତ୍ୱ ତେବେ ତୁ ପରେ ବୁଝିବୁ । ଠିକ୍ ଅଛି । ଛାଡ଼ । ଶୁଣ, ଆମ ଭିତରୁ ଜଣକୁ ଚଂଦ୍ରବରମ୍ ଯିବାକୁ ପଡ଼ିବ । ମୋର ତ ଗୁଡ଼ାଏ କାମ ଅଛି । ଚାରିଦିନ ଯାଏ ମୁଁ କୁଆଡ଼େ ଯାଇ ପାରିବି ନାହିଁ । ତୁ ତ ଆମଘରର ପୁରୁଣା ଚାକର । ତୁ ଯାଇ କମଳିନୀକୁ ନେଇ ଆ । ଆଚ୍ଛା, ସେଠିକି ଯାଇ ତ ତାଂକୁ କଣ କହିବ ?

- ମୁଁ କଣ ଜାଣେ; କଣ କହିବାକୁ ପଡ଼ିବ ଆଜ୍ଞା ?

ଆପଣତ ମୋ ଦେହଟାକୁ ଦି'ଖଂଡ଼ କରିଦେଲେ ।

- ଆରେ, ତୁ ସେ ମାଡ଼କଥା ଭୁଲି ଯା । ନେ ଦି'ଟଙ୍କା ନେ । ସେ କଥା ଆଉ ତୁଂଡ଼ରେ ଧରିବୁ ନାହିଁ । ଭୁଲରେ ବି ସେ କଥା କମଳିନୀଙ୍କ ଆଗରେ କହିବୁ ନାହିଁ । ବୁଝିଲୁ ?

- ଠିକ୍ ଅଛି ଆଜ୍ଞା ।

- ତୁ ଯାଇ ସେଠି କଣ କହିବୁ, ମୁଁ କହୁଛି, କାନ ଖୋଲି ଶୁଣିଥା । କହିବୁ - 'ତୋ ବାବୁଙ୍କ ବୁଦ୍ଧି ଏବେ ବାଟରେ ପଡ଼ି ଯାଇଛି । ଆଉ କେବେ ବି ନାଚବାଲୀର ଗୀତ ଶୁଣିବାକୁ ଯିବେ ନାହିଁ । ଭୁଲରେ ସୁଦ୍ଧା ରାତିରେ ଘରୁ ପଦାକୁ ବାହାରିବେ ନାହିଁ । ତମର ପଦତଳେ ପଡ଼ି ନେହୁରା ହୋଇ କହିବାକୁ ମୋତେ ପଠାଇଛନ୍ତି । ବାବୁଙ୍କ ଦୋଷ ଦୁର୍ବଳତା ସବୁ କାହା ଆଗରେ ବି କହିବେ ନାହିଁ । ଖୁବ୍ ଶିଘ୍ର ଦିନେ ଦି'ଦିନ ଭିତରେ ଘରକୁ ଫେରିବାକୁ କହିଛଂତି । ତମ ବିନା ତାଂକ ଜୀବନଟି ଦୁର୍ବିସହ ହୋଇ ପଡ଼ିଛି । ଗୋଟାଏ ମୁହୂର୍ତ୍ତ ବି ଯୁଗଟିଏ ପରି ଲାଗୁଛି । ଦିନଟିଏ ପାହାଡ଼ ପରି ଲାଗୁଛି । ଏପରି ସବୁକଥା ତାଙ୍କୁ ବୁଝାଇ କହିବୁ । ବୁଝିଲୁ ?

- ବୁଝିଗଲି ଆଜ୍ଞା ।

- କଣ ବୁଝିଲୁ କହ ତ ଟିକେ ।

ରାମୁଭୁ ମୁଂଡ଼ ଚଳକୁ ପୋଚି ଛିଡ଼ା ହେଲା ।

- ଆଜ୍ଞା, ଆପଣ ଯାହା କହିଲେ, ଠିକ୍ କହିଲେ ।

ହେଲେ ସେଥିରୁ ପଦେ ହେଲେ ମୁଁ ଆଉଥରେ କହି ପାରିବି ନାହିଁ । ମୁଁ ତ ମୋ ନିଜ ସିଧା ସାଦା ଭାଷାରେ କେବଳ ଏତିକି କହିବି, 'ମା, ମୋ କଥା ମାନଂତୁ । ତମଘରେ ଚାକର ରହି ମୋ ବାଳ ପାଚିଲା । ତିରିଲା ମାନଙ୍କୁ ନିଜ ମରଦ ମାନଙ୍କ କଥା ଚୁପ୍ ଚାପ୍ ମାନିନେବା ଦରକାର । ମୋ କଥା ଯଦି ନ ମାନିବେ ତେବେ ବଡ଼ ମାଲିକଙ୍କ ପରି ଛୋଟ ମାଲିକ ବି ସେଇ ନାଚବାଲୀକୁ ନିଜଘରେ ରଖିନେବେ । ଆଉ ଗୋଟେ ନିଆରା କଥା କହିବି ? ସୁନାପରି ଚକ୍‌ଚକ୍ କରୁଥିବା ଆଉ ଗୋଟିଏ ସୁଂଦରୀ ନାଚବାଲୀ ସହରକୁ ଆସିଛି । ମାଲିକଙ୍କ ଲଗାମଛଡ଼ା ମନ କଣ କରି ପକାଇବ କେଜାଣି । ତେଣିକି ତମର ଇଚ୍ଛା...... ମୁଁ ଠିକ୍ କହୁଛି ନା ଆଜ୍ଞା ?'

- ଆରେ ହାରାମଜାଦା...... ଗୋପାଳରାଓ ଚିତ୍କାର କରି ଚୌକୀରୁ ଉଠି ପଡ଼ିଲେ । ସେ ଖୁବ୍ ରାଗି ପାଚି ଯାଇଥିଲେ ।

ରାମୁଭୁ ଦୌଡ଼ି ବାହାରକୁ ଚାଲିଗଲା ।

ଠିକ୍ ଏତିକିବେଳେ ଖଟତଳୁ ମନୋହାରିଣୀ ମଧୁର ହସର ଫୁଆରା ଫୁଟି ଉଠିଲା ଓ ତା ସଂଗେ ସଂଗେ ଚୁଡ଼ି ରଣ୍‌ଝଣ୍‌ର ମହକ ବି ଶୁଣାଗଲା ।

*ଭାଷାନ୍ତର : ମନୋଜ କୁମାର ପଣ୍ଡା*



୧୮୭୧ ମସିହା ଜୁନ୍ ୧୯ ତାରିଖରେ ମଧ୍ୟପ୍ରଦେଶର ଦାମୋହ ଜିଲ୍ଲାର ପଥରିଆ ଗାଁ ରେ ଶ୍ରୀ ମାଧବରାଓ ସପ୍ରେଙ୍କ ଜନ୍ମ । ତାଙ୍କର ମାତୃଭାଷା ଥିଲା ମରାଠୀ । ୧୯୦୦ ମସିହାରେ 'ଛତିଶଗଡ଼ ମିତ୍ର' ନାମକ ଏକ ମାସିକ ର ପ୍ରକାଶନ ତାଙ୍କ ସାହିତ୍ୟମୟ ଜୀବନର ଶୁଭାରମ୍ଭ । ମୌଳିକ ଲେଖା, ସଂପାଦନା, ଅନୁବାଦ, ହିନ୍ଦୀ ଗଦ୍ୟର ଶୁଦ୍ଧ ପ୍ରୟୋଗ ତଥା ସମୀକ୍ଷାତ୍ମକ ଉପସ୍ଥାପନାର ପ୍ରାରମ୍ଭ କରିଥିଲେ ସେ । ବାଲ ଗଙ୍ଗାଧର ତିଲକଙ୍କର ଅନନ୍ୟ ଆଦର୍ଶରେ ଅନୁପ୍ରାଣିତ ହୋଇ ସ୍ୱାଧିନତା ସଂଗ୍ରାମରେ ସେ ଝାସ ଦେଇଥିଲେ । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର, ଗୀତା ରହସ୍ୟ, ଦାସବୋଧ ଇତ୍ୟାଦି ବହୁ ଗ୍ରନ୍ଥ ତାଙ୍କ ଦ୍ୱାରା ଅନୁଦିତ । ୧୯୦୧ ମସିହାରେ ଲିଖିତ ଓ ପ୍ରକାଶିତ 'ଏକ ଟେକରୀ ଭର ମିଟ୍ଟୀ' (ଟୋକେଇ ଭର୍ତ୍ତି ମାଟି) ହିନ୍ଦୀ ସାହିତ୍ୟର ପ୍ରଥମ ମୌଳିକ କାହାଣୀ ଭାବରେ ସ୍ୱୀକୃତ ।

# ଟୋକେଇ ଭର୍ତ୍ତି ମାଟି

ଜଣେ ଶ୍ରୀମାନ ଜମିଦାରଙ୍କ କୋଠା ପାଖରେ ଜଣେ ନିଆଶ୍ରୀ ବିଧବାର କୁଡ଼ିଆ ଥିଲା । ଜମିଦାର ସାହେବ ତାଙ୍କର କୋଠାର ହତାକୁ କୁଡ଼ିଆ ପର୍ଯ୍ୟନ୍ତ ବଢ଼ାଇବାକୁ ଇଚ୍ଛା କଲେ । ବିଧବାକୁ ବେହେରା ଯାଇ କହିଲା : କୁଡ଼ିଆ ଉଠାଇ ଦେ । ହେଲେ ସେ ତ କେଉଁ ଯୁଗରୁ ସେଠି ରହୁଛି । ତାର ପ୍ରିୟ ସ୍ୱାମୀ ଆଉ ଏକୋଇର ବଳା ମଧ ସେଠି ମରିଛନ୍ତି । ବୋହୁଟା ମଧ ଚାଲିଯାଇଅଛି ପାଞ୍ଚବର୍ଷର ଝିଅକୁ ଛାଡ଼ି । ଏବେ ସେଇ ନାତୁଣୀଟି ହିଁ ଏଇ ବୃଦ୍ଧାବସ୍ଥାର ଏକମାତ୍ର ଆଶ୍ରା । କେବେ ଯଦି ତା ଅତୀତ କଥା ମନେ ପଡ଼ିଯାଏ ସେ କାନ୍ଦିପକାଏ । ଆଉ ଯେତେବେଳେ ତାର ଶ୍ରୀମାନ ପଡ଼ୋଶୀଙ୍କ ଇଚ୍ଛା କଥା ଶୁଣିଲା ସେତେବେଳୁ ସେ ମୃତପ୍ରାୟ ହୋଇପଡ଼ିଛି । ସେହି କୁଡ଼ିଆରେ ତାର ଏତିକି ମନ ଲାଗିଯାଇଥିଲା ଯେ, ନ ମରି ସେ କୁଡ଼ିଆରୁ ବାହାରିବାକୁ ଚାହୁଁ ନଥିଲା । ନିଷ୍ଫଳ ହେଲା ଶ୍ରୀମାନଙ୍କ ସମସ୍ତ ଚେଷ୍ଟା । ତା ପରେ ସେ ତାଙ୍କର ଜମିଦାରୀ ଚାଲ ଚଲେଇ ବସିଲେ । ଜିରାରୁ ଶିରା ବାହାର କରୁଥିବା ଓକିଲଙ୍କ ପକେଟ ଗରମ କରି ସେ ଅଦାଲତରୁ କୁଡ଼ିଆରେ ନିଜର ଅଧିକାର ସାବ୍ୟସ୍ତ କରିନେଲେ ଆଉ ବିଧବାକୁ ସେଠୁ ବାହାର କରିଦେଲେ । ବିଚାରୀ ତ ଅନାଥ ଥିଲା; ପାଖ ପଡ଼ିଶା କେଉଁଠି ଯାଇ ରହିଲା ।

ଦିନେ ଶ୍ରୀମାନ ସେହି କୁଡ଼ିଆ ପାଖରେ ଟହଲ ମାରି ଲୋକଙ୍କୁ କାମ କରାଉଥିବା ସମୟରେ ସେ ନିଆଶ୍ରୀ ବିଧବା ଜଣଙ୍କ ହାତରେ ଟୋକେଇଟିଏ ଧରି ସେଠି ପହଞ୍ଚିଲା । ଶ୍ରୀମାନ ଦେଖୁ ଦେଖୁ ଚାକରକୁ ଡ଼ାକି ତାକୁ ବାହାର କରିଦେବାକୁ ହୁକୁମ ଦେଲେ । କିନ୍ତୁ ସେ ବିରକ୍ତ ହୋଇ କହିଲା, "ମହାରାଜ ଏ କୁଡ଼ିଆତ ଆପଣଙ୍କର ହୋଇ ଗଲାଣି । ମୁଁ ତାହା ନେଇ ଆସିନି । ମହାରାଜ ଯଦି କ୍ଷମା କରିବେ ଗୋଟିଏ ବିନତି ଅଛି । ଜମିଦାର ସାହେବ ମୁଣ୍ଡ ହଲେଇବାରୁ ସେ କହିଲା "ଯେବେଠୁଁ ଏହି କୁଡ଼ିଆ ଛାଡ଼ିଛୁଁ ସେବେଠୁ ମୋର ନାତୁଣୀ ଖାଇବା ପିଇବା ଛାଡ଼ି ଦେଇଛି । ମୁଁ ବହୁତ କିଛି ବୁଝାଇଲି, ହେଲେ ସେ ଗୋଟିକ ମାନୁନି । କହୁଛି ଚାଲ ଆମର ଘରକୁ ଯିବା, ସେଠି ଖାଇବି । ଏବେ ମୁଁ ଏହା ଭାବିଛି କି ଏହି କୁଡ଼ିଆରୁ ଟୋକେଇଏ ମାଟି ନେଇ ସେଥିରେ ଏକ ଚୁଲ୍ଲି ତିଆର କରି ଭାତ ରାନ୍ଧିବି । ସେଥିରେ ଭରସା ଅଛି ଯେ ସେ ଭାତ ଖାଇବ । ମହାରାଜ କୃପା କରି ଆଜ୍ଞା ଦିଅନ୍ତେ ଯଦି ଏହି ଟୋକେଇରେ ମାଟି ନେଇଯିବି । ଶ୍ରୀମାନ ଆଜ୍ଞା ଦେଲେ ।

ବିଧବାଟି କୁଡ଼ିଆ ଭିତରକୁ ଗଲା । ସେଠିକୁ ଯେମିତି ଗଲା ତାର ଅତୀତ କଥା ସବୁ ମନେ ପଡ଼ିଗଲା ଆଉ ତା ଆଖିରୁ ବହିବାକୁ ଲାଗିଲା ଅଶ୍ରୁର ଧାରା । ନିଜ ଅନ୍ତରର ଦୁଃଖକୁ କୌଣସି ପ୍ରକାରେ ସମ୍ଭାଳି ନେଇ ସେ ନିଜ ଟୋକେଇକୁ ମାଟିରେ ଭର୍ତ୍ତି କଲା, ହାତରେ ଉଠାଇ ବାହାରକୁ ନେଇଆସିଲା । ପୁଣି ହାତଯୋଡ଼ି ଶ୍ରୀମାନଙ୍କୁ ପ୍ରାର୍ଥନା କଲା, "ମହାରାଜ, କୃପା କରି ଏହି ଟୋକେଇକୁ ଟିକିଏ ହାତ ଦିଅନ୍ତୁ ଯେମିତି ମୁଁ ମୋ

ମୁଣ୍ଡରେ ବୋହି ପାରିବି । ଜମିଦାର ସାହେବ ପ୍ରଥମେ ବହୁତ ମନା କଲେ କିନ୍ତୁ ଯେତେବେଳେ ବୁଢ଼ୀଟି ବାରମ୍ବାର ହାତଯୋଡ଼ି ପାଦରେ ପଡ଼ିବାରୁ ତାଙ୍କ ମନରେ ଟିକିଏ ଦୟା ଆସିଲା । କୌଣସି ଚାକରକୁ ନ ଡାକି ସେ ସ୍ୱୟଂ ଟୋକେଇ ଉଠେଇ ଦେବାକୁ ଆଗକୁ ଆସିଲେ । ସେ ଯେତେବେଳେ ଜାଣିପାରିଲେ ଏହା ତାଙ୍କର ଶକ୍ତିର ବାହାରେ ତଥାପି ସେ ନିଜର ସମସ୍ତ ଶକ୍ତି ଖଟାଇ ଟୋକେଇକୁ ଉଠାଇବାକୁ ଲାଗିଲେ କିନ୍ତୁ ଯେଉଁଠି ଟୋକେଇ ରହିଥିଲା ସେଠୁ ହାତଟିଏ ମଧ୍ୟ ଉଠିଲା ନାହିଁ । ସେ ଲଜ୍ଜିତ ହୋଇ କହିଲେ, ନାଁ, ଏହି ଟୋକେଇ ମୋ ଦ୍ୱାରା ଉଠି ପାରିବ ନାହିଁ ।

ଏହାଶୁଣି ବିଧବା କହିଲା, ମହାରାଜ ରାଗିବେ ନାହିଁ, ଆପଣଙ୍କ ଦ୍ୱାରା ଟୋକେଇଟିଏ ମାଟି ଉଠାଯାଇ ପାରୁନାହିଁ ଆଉ ଏହି କୁଡ଼ିଆରେ ତ ହଜାର ହଜାର ଟୋକେଇ ମାଟି ରହିଛି । ତାହାର ଭାର ଜନ୍ମଜନ୍ମାନ୍ତର ଯାଏଁ ଉଠାଇ ପାରିବେ କେମିତି ? ଆପଣ ଏ କଥା ବିଚାର କରନ୍ତୁ ।

ଜମିଦାର ସାହେବ ଧନମଦରେ ଗର୍ବିତ ହୋଇ ନିଜର କର୍ତ୍ତବ୍ୟ ଭୁଲିଯାଇଥିଲେ, ହେଲେ ବିଧବାର କଥା ଶୁଣି ତାଙ୍କ ଆଖି ଖୋଲିଗଲା । କୃତକର୍ମର ପଶ୍ଚାତାପ କରି ସେ ବିଧବାକୁ କ୍ଷମା ମାଗିଲେ ଆଉ ତାର କୁଡ଼ିଆ ତାକୁ ଫେରାଇ ଦେଲେ ।

*ଭାଷାନ୍ତର : ନିମାଇଁ ଚରଣ ପାଣିଗ୍ରାହୀ*



ଅସମୀଆ ସାହିତ୍ୟର ଆଦ୍ୟଗଳ୍ପ 'କନ୍ୟା'ର ଲେଖକ ହେଉଛନ୍ତି ଶ୍ରୀ ଲକ୍ଷ୍ମୀନାଥ ବେଜ୍‌ବରୁଆ । ପିଲାଟି ଦିନରୁ ଅସମୀଆ ଭାଷା ସାହିତ୍ୟର ଉନ୍ନତି ଚିନ୍ତା କରୁଥିବା ଲକ୍ଷ୍ମୀନାଥ ବଡ଼ ହେଲା ପରେ ସ୍ଥାପନ କରିଥିଲେ 'ଅସମୀଆ ଭାଷା ଉନ୍ନତି ସାଧିନୀ ସଭା' । ଜୀବନଚକ୍ରରେ ବିଭିନ୍ନ କାର୍ଯ୍ୟ କରୁଥିଲେ ସୁଦ୍ଧା ସାହିତ୍ୟ ସାଧନା ଥିଲା ଅବିରତ । ଲକ୍ଷ୍ମୀନାଥ ଥିଲେ ମୁଖ୍ୟତଃ ହାସ୍ୟ ବ୍ୟଙ୍ଗ ଲେଖକ । କିନ୍ତୁ ତାଙ୍କ ପ୍ରତିଭା ଥିଲା ବହୁମୁଖୀ । ଅସମୀଆ ସାହିତ୍ୟର ଆଦ୍ୟଗଳ୍ପ 'କନ୍ୟା' ତାଙ୍କର ବହୁମୁଖୀ ପ୍ରତିଭାର ପରିଚୟ । ଏହି ଗଳ୍ପଟି ୧୮୯୧ରେ ରଚିତ ।

# କନ୍ୟା

କିଛି ଖାସ୍ କାମରେ କିଛିଦିନ ପାଇଁ ମୋତେ ପ୍ରବାସରେ ରହିବାକୁ ପଡ଼ିଲା । ପ୍ରବାସ ନ କହି ତାକୁ ବନବାସ କହିଲେ ହିଁ ଠିକ୍ ହେବ । ମୋର ରହିବା ସ୍ଥାନର ଚାରିପଟେ ବଡ଼ବଡ଼ ଗଛ, ପର୍ବତ ଏବଂ କୋଇଲା ଠାରୁ କଳା ରଙ୍ଗର କୋଲ୍ଲ ଲୋକମାନଙ୍କର ଛୋଟ ଛୋଟ ଘର ଥିଲା । ହଁ, ଘର କହିଲେ ବୁଝି ନେବା ଉଚିତ୍ ହେବନି ଯେ ତାହା ତୁମ ଆମ ପରି ଘର ଥିଲା - ଝୁମ୍ପୁଡ଼ି କିମ୍ବା କୁଟୀର, ସେଇଟା ଆସାମର ଗରିବ ଲୋକ କିମ୍ବା ଭିକାରୀ ମାନଙ୍କ ଝୁମ୍ପୁଡ଼ି, ଭଳି ହୋଇଥିବ ବୋଲି ବୁଝିବା ବି ଭୁଲ ହେବ । ଗଛର ଚାରି ପାଞ୍ଚଟି ଖୁଣ୍ଟ ପୋତି ଦେଇ ହାରାହାରି ଚାରିପାଞ୍ଚ ହାତ ଲମ୍ୱର ବତା - ଯେମିତି ତିଆରି ହେଲା, ତା'ଉପରେ କିଛି ଛଣ ବିଛେଇ ଦିଅ, ବିନା କାନ୍ଥରେ ଦୁଇ ଆଡ଼ର ଛାଉଣୀକୁ ମାଡ଼ି ପର୍ଯ୍ୟନ୍ତ ଲମ୍ୱେଇ ଦେଇ କାନ୍ଥ ଭାବି କାମ ଚଳାଅ । ତା'ପରେ-ବାହାର ଆଡ଼କୁ ଯିବା ଆସିବାର ରାସ୍ତା ବନେଇ ନିଅ । ତ' ଦେଖିବ ପତି ପତ୍ନୀ, ପୁଅ ବୋହୂ, ଛୁଆ ପିଲା ଥିବା ଏକ ପରିବାର ଭଳି କୋଲ୍ଲ ଲୋକ ମାନଙ୍କ ଝୁମ୍ପୁଡ଼ି ଟିଏ ତୁମେ ତିଆରି ନେଇଛ ।

ଆମ ଘର ପାଖରେ ହିଁ ଗୋଟିଏ ଛୋଟ ପାହାଡ଼ ନଈ ପଥର ଚଟାଣ ଦେଇ ବୋହି ଯାଉଥାଏ । ନଈ ନାଁ ଥିଲା ''କନ୍ୟା'' । ବଡ଼ ମଧୁର ନାଁ ଟିଏ । ଏଇ ନାଁ କୌଣସି ଜଣେ କବି ଦେଇଥିବେ ନତୁବା ନଈ ନିଜେ ହିଁ ନଜଗୁଣ ପାଇଁ ସାଧାରଣ ଅକବି ଲୋକଙ୍କ ହୃଦୟରେ କବିତାର ଲହର ସୃଷ୍ଟି କରି ବଳ ପୂର୍ବକ ଏଇ ନାଁ ରଖେଇଥିବ । କନ୍ୟା ଗର୍ଭରେ ଅନେକ ଗୁଡ଼ିଏ ଛୋଟ ବଡ଼ ପଥର ଥିଲା । ଏଇ ପଥର ଉପରେ ବୋହୁଥିବା ଜଳ ଧାରାରେ ଦିନରାତି ସବୁବେଳେ ହର୍ ହର୍ ଧ୍ୱନି ପ୍ରତିଧ୍ୱନି ହେଉଥାଏ । ହାରାହାରି ଅଧା ମାଇଲ ଦୂରରୁ ହ, କାନ୍ଦିବାର ଭ୍ରମ ସୃଷ୍ଟି କରି, ସେଇ ହର୍ ହର୍ ବିଷାଦ ସୂଚକ ଆୱାଜ କାନରେ ଆସି ବାଜେ ଯାହା ଶୁଣି ମୋର ମନ ବନଚାରୀ ହୋଇ କେଉଁଆଡ଼େ ଚାଲିଯିବାକୁ ଇଚ୍ଛା ହୁଏ । ଦୁଇ ଆଡ଼ର କାହିଁ କେଉଁ ଆଦିମ ଯୁଗର ବିଶାଳ ଗଛମାନଙ୍କ ବି' ଧାଡ଼ି ଲାଗୁଥାଏ, ନଈକୁ ଆଲିଙ୍ଗନ କରି, କାନ୍ଦ ଶୁଣି ଦୁଃଖରେ, ସମ୍ବେଦନା ସୂଚକ ଜଳବିନ୍ଦୁ ଦ୍ୱାରା ସହାନୁଭୂତି ପ୍ରକାଶ କରୁଛନ୍ତି ।

ବିଶ୍ୱ ନିୟନ୍ତାଙ୍କ ରାଜ୍ୟରେ ଏଇ ମର୍ମଭେଦୀ ଶୋକ ଓ ହୃଦୟସ୍ପର୍ଶୀ ସହାନୁଭୂତିର କି ତାତ୍ପର୍ଯ୍ୟ ଅଛି, ମୁଁ ବା କେମିତି ବୁଝି ପାରିବି ? କିନ୍ତୁ ଯେଉଁଠାରେ ଏଭଳି ବିଶୁଦ୍ଧ ସହାନୁଭୂତି ମିଳେ, ସେଠାରେ ତ କାନ୍ଦିଲେ ବି ସୁଖ ଅଛି । ସଞ୍ଜ ସକାଳେ ଅବସର ସମୟରେ କନ୍ୟା ର କୂଳରେ ହିଁ କଟେଇ ଦିଅନ୍ତି । ଖୁବ୍ ଭଲ ଲାଗନ୍ତା । ସେଠାରେ ମୋର ଖାସ୍ କରି ଦୁଇଟି କାମ ଥିଲା, ପ୍ରଥମ ଟା, ନାଲି, କଳା, ଧଳା, ନୀଳ ଇତ୍ୟାଦି ରଙ୍ଗର ପଥରକୁ ଏକାଠି କରିବା । ଦ୍ୱିତୀୟଟା କୂଳରେ ଏକ ଗଛମୂଳେ ଏକ୍ଲା ବସି

କନ୍ୟାର ସେଇ କାନ୍ଦଣା ଶୁଣିବା । ଏତେଦିନ ପରେ ଆଜି ବି ସେଇ ଦୁଇଟା କାମ ଏବଂ କନ୍ୟାର ସେଇ କୂନ୍ଦ ମନେ ପଡ଼ିଲେ ଛାତି କୋରି ହୋଇଉଠେ ।

ମୋର ଉଲ୍ଲିଖିତ ଦୁଇଟି କାର୍ଯ୍ୟରେ କେବେ କେବେ ଜଣେ ବନ୍ଧୁ ଆସି ଜୁଟି ଯାଆନ୍ତି । ବନ୍ଧୁବର, କିନ୍ତୁ ସଂସାରୀ ତଥା ଖୁସ୍ ମିଜାଜର ମଣିଷ ଥିଲେ ଅର୍ଥାତ୍ ଏଇ ସଂସାରରେ ଖାଇ ପିଇ ମାନବାଭିମୁଖୀ ହେବାରେ ଯେମିତି ହେବା କଥା, ଅବିକଳ ସେଇ ପରି, କବିତାର ଫେଣ ପିଇ ଜୀବନ ସାରା ଉଃ....ଉଃ....ଆଃ....ଆଃ.... କରି କାଟିବା ବ୍ୟକ୍ତି ନ ଥିଲେ । କାହାରିକୁ କେବେ କବିତା ଲେଖିବା ଦେଖିଲେ, ତାଙ୍କୁ ଗୋଟିଏ ଦି ପଦ ମଜାକିଆ ଶବ୍ଦ ପ୍ରୟୋଗ କରି ହାସ୍ୟରସର ଅବତାରଣା ନ କରି ରହୁ ନଥିଲେ । ଯଦି କୌଣସି ଗଛର ସୌନ୍ଦର୍ଯ୍ୟ ଦେଖାଇ, ତା ବାବଦରେ କିଛି କୁହାଯାଏ ତ' ସିଏ ଗଛର ଲମ୍ବ କେତେ ଅଛି ତଥା ତାର ଘେର କେତେହାତ ହେବ, ତାକୁ କାଟିଲେ କେତୋଟି ଖମ୍ବ ଏବଂ ପଟା ବାହାରିବ ତଥା ତାର ମୂଲ୍ୟ କେତେ ହେବ, ଆଦ, ହିସାବ କିତାବ କରି କାବ୍ୟରସର ଦଶାହ ଶ୍ରାଦ୍ଧ କରି ବସନ୍ତି । ଯଦି କେହି କେବେ କଳାପଥର ବାଛି, ତାଙ୍କୁ ଦେଖାଇ କହିବ ''ଆଃ....ଦେଖନ୍ତୁତ' କେତେ ସୁନ୍ଦର ହୋଇଛି ?'' ତ'ସିଏ ତାକୁ ଭାଂଗି ଦେଇ, ତରଳାଇଲେ, ସେଥିରୁ କେତେ ଲୁହା ଏବଂ ଅନ୍ୟ ଧାତୁ ବାହାରିବ ତା'ର ହିସାବ କରି କଥା ଶେଷ କରିଦେବେ । ଦିନେ ଏକ ସୁନ୍ଦର କଳାପଥର ଦେଖେଇ ମୁଁ ପଚାରିଲି, ଆଚ୍ଛା ! ଏଇଟା ଦେଖିବାରେ ଏତେ ଚିକ୍କଣ ହେଲେ ୟେ କଳା ରଙ୍ଗ ହେଲା କେମିତି ? ତାର ଉତ୍ତର ଥିଲା ''ଏଇ କଳା କଳା ଲୋକ ମାନଙ୍କୁ ଦେଖି ପାରୁଛନା ? ମୃତ୍ୟୁ ପରେ ଏମାନଙ୍କ ମାଂସ ଓ ହାଡ଼ ଚୂକୁଡ଼ା ଚୂକୁଡ଼ା ହୋଇ ହିଁ ଏଇ ପଥର ତିଆରି ହୁଏ । ମୁଁ ପଥର ଖୋଜେ, ନିର୍ବାଚନ କରି ତାଲେ, ସେ ବି ମୋ ସହ ଖୋଜି ଲାଗନ୍ତ, ହେଲେ କହନ୍ତ ଯେ, ତାଙ୍କ ଉଦ୍ଦେଶ୍ୟ ଭିନ୍ନ ଅଟେ । ସିଏ ପଥର ଖୋଜନ୍ତିନି, ସିଏ ଖୋଜନ୍ତି ଏଇଥି ପାଇଁ ଯେ କେଉଁଠି କେବେ ହୀରା କିମ୍ବା ଅନ୍ୟ କିଛି ବହୁମୂଲ୍ୟ ପଥର ମିଳି ଯାଇପାରେ ।

ଯେଉଁ ଗଛମୂଳେ ବସି ମୁଁ ମୋର ଅନ୍ୟ କାମ ସବୁ କରେ, ସେଠାରୁ ହାରାହାରି ଚାଳିଶ ହାତ ଦୂରରେ ନଈର ବାଙ୍କ ଥିଲା । ସେଠାରେ ହାରାହାରି କୋଡ଼ିଏ ବର୍ଷର ଜଣେ ଯୁବକ ପ୍ରତିଦିନ ଅପରାହ୍ନ ରେ ଆସି ସଂଧ୍ୟା ପର୍ଯ୍ୟନ୍ତ ବନଶୀ କଣ୍ଟାରେ ମାଛ ଧରେ । ସିଏ ପ୍ରତିଦିନ ବନଶୀ କଣ୍ଟା ପକାଉଥାଏ ସତ, ହେଲେ ମୁଁ କେବେ ବି ଗୋଟିଏ ମଧ୍ୟ ମାଛ ଧରିବାର ଦେଖିନି । ନଈରେ ମାଛ ନଥିଲା ଏଭଳି କିଛି କଥା ନାହିଁ ଅଥବା ବନଶୀ ଥୋପରେ ମୁହଁ ମାରିବାର ଅଭ୍ୟାସ ନଥିଲା ମାଛମାନଙ୍କର, ତାହା ବି ନୁହେଁ । ଅନ୍ୟ ଲୋକଙ୍କ ପିଲାମାନେ ତ' ସେଇ ନଈରୁ ବନଶୀ ପକେଇ ଝୁଡ଼ି ଝୁଡ଼ି ମାଛ ଲଗେଇ ଆନନ୍ଦରେ ଖାଉଥିଲେ । ଅସଲ କଥା ହେଲା, ଆମର ସେ ପିଲା ବନଶୀ ପକାଉଥିଲା ପାଣିରେ ହେଲେ ଆଖି ଲଗେଇ ରଖୁଥିଲା, ନଈ ସେ ପାରିକୁ । ମାଛ ମାନେ ନିଜ

ସୁବିଧା ଅନୁସାରେ ଆସି ମୁହଁ ମାରନ୍ତି, ଚାରା ଟାଣିବାର ବ୍ୟାୟାମ ନଚୁବା ଝିଙ୍କା ଝିଙ୍କି ବି କରନ୍ତି । ଶେଷ ପର୍ଯ୍ୟନ୍ତ ବନଶୀ ଦେହରେ ଲାଗିଥିବା ଚାରାକୁ ପେଟ ଭର୍ତ୍ତି ଖାଇ ଭୋକ ମେଣ୍ଟାଇ ଫେରିଯାନ୍ତି । ହେଲେ ବନଶୀ ପକାଉଥିବା ଲୋକକୁ କିଛି ଜଣା ନଥିଲା । ବନଶୀର ମାଲିକ ଚ' ଖାଲି ସେ କୂଳକୁ ଆଖି ପକେଇ କୌଣସି ଏକ ସ୍ୱପ୍ନପୁରୀରେ ଘେରା ଲଗାଉ ଥିଲା ।

ସେ କୂଳରେ ସାମ୍ନାସାମ୍ନି ହିଁ ପାଣି ଘାଟ ଟିଏ ଥାଏ । ଜଣେ କଳା ବର୍ଣ୍ଣର କୋଲ ଯୁବତୀ ସେଇ ସମୟରେ ପ୍ରତିଦିନ ମାଠିଆ ନେଇ ପାଣି ନେବାକୁ ପାଖକୁ ଆସେ । ସେଇ କଳା ଚୁମ୍ବକ, ଆମ ଯୁବକର କଳା ଆଖିକୁ ସେଇ ଆଡ଼େ ଟାଣି ରଖିଥାଏ । କୋଲ ଯୁବତୀ ପ୍ରତିଦିନ ଅପରାହ୍ନ ରେ ହିଁ ପାଣିନେବାକୁ ଆସେ ହେଲେ ସଞ୍ଜ ହେବା ଯାଏଁ ବି ତାର ମାଠିଆ ଧୁଆ ଶେଷ ହୋଇ ପାରେନି । ତା'ର ମାଟିର ମାଠିଆ ସହ ମଇଳାର ଏତେ ଗଭୀର ପ୍ରେମ କାହିଁକି ଥିଲା ଜଣା ପଡ଼େନି । ତାକୁ ଘସି ମାଜି, ଧୋଇ ଧୋଇ ବି କୌଣସି ପ୍ରକାରେ ମାଠିଆରୁ ମଇଳା ମିଟେଇ ପାରେନାହିଁ ।

ଯେ ଯାହା ହେଉ, ଏକ ମାଛ ଧରାଳୀ ଯୁବକ ଓ ସେଇ ପାଣି ଭରିବା ଯୁବତୀ ମଧ୍ୟରେ କେବେ କଥାବାର୍ତ୍ତା ହୋଇଥିବ, ଏମିତି ଦେଖା ଯାଉ ନଥିଲା । ଦେଖିବାରେ ଏତିକି କେବଳ ଅନୁମାନ ହେଉଥାଏ ଯେ ଏପଟେ ଯେ, ବନଶୀକାଠି ନେଇ, ଆକାଶରୁ ଖସି ପଡ଼ିଥିବା ମଣିଷ ଭଳି ବିସ୍ଫାରିତ ନୟନରେ ଚାହିଁ ରହିଥାଏ । ସେ ପଟେ ସିଏ ମାଠିଆକୁ ବାରମ୍ବାର ଘସି ଘସି ଆଡ଼ ନୟନରେ ଦେଖି ସମୟ କଟେଇ ନେଉଥାଏ । ଏଭଳି କିଛି ଦିନ ଗଲା । ଏପ୍ରକାର ଲିଳା ସବୁଦିନ ଚାଲିଲା । କନ୍ୟା ନଇ କୁଳକୁ ଯିବାବେଳେ ମୋର କାର୍ଯ୍ୟ ମାନଙ୍କ ମଧ୍ୟରେ, ଏ ଲିଳା ଦେଖିବା ବି ତୃତୀୟକାମ ହିସାବରେ ତାଲିକା ଭୁକ୍ତହେଲା । ଦେଖି ସମୟ କଟେଇ ନେଉଥାଏ ।

ଦିନେ ଆମେ ତିନେହେଁ ଆମ ନିଜ ନିଜ ନିତ୍ୟକର୍ମରେ ବ୍ୟସ୍ତ ଥିଲୁ । ଦେଖାଗଲା ଯେ ସେ କୋଲ ଯୁବକ ଭୟଙ୍କର ଭାବରେ ଚିତ୍କାର କରି, ହାତର ବନଶୀ କାଠି ଫିଙ୍ଗି ଦେଇ ଝପ୍ କରି ନଈ ପାଣିକୁ ଡେଇଁ ପଡ଼ିଲା । ଯା'ର କିଛି ଅର୍ଥବୁଝି ନ ପାରି ମୁଁ କ୍ଷଣ ପାଇଁ ଚୁପ୍ ହୋଇ ଦେଖିବାରେ ଲାଗିଲି । ଦେଖିଲି ଯେ ସେ ଢକ୍‌ଢକ୍ ପାଣି ପିଇ ବୁଡ଼ିଯାଉଥିଲା । ସେହି ଅବସ୍ଥାରେ ମୁଁ ବି ଦୌଡ଼ି ଯାଇ ପାଣିକୁ ଶୀଘ୍ର ଡେଇଁ ପଡ଼ିଲି । କିନ୍ତୁ ଯେତେବେଳେ ମୁଁ ପାଣିକୁ ଗଲି, ସେତେବେଳକୁ ସିଏ ତଳକୁ ଚାଲିଯାଇଥିଲା । ହାରାହାରି ଦୁଇ ତିନି ମିନିଟ ପର୍ଯ୍ୟନ୍ତ ଖୋଜିବା ପରେ ପରେ ତାକୁ ଲସର୍ ପସର ହୋଇ ବଡ଼ କଷ୍ଟରେ କୂଳକୁ ଆଣିଲି । ଫେରି ଚାହିଁଲି ଯେ ଚାରି ପାଞ୍ଚ ଜଣ ଲୋକ ମୋତେ ସାହାଯ୍ୟ କରିବା ପାଇଁ ଦୌଡ଼ି ଆସୁଥିଲେ । କିଛି ସମୟ ପରେ ଅନେକ ଲୋକ ଆସି ସେଠାରେ ଏକଜୁଟ ହେଲେ । ଦୌଡ଼ି ଦୌଡ଼ି, କାନ୍ଦି କାନ୍ଦି ତା'ର ମା' ବାପା ବି ପହଞ୍ଚଗଲେ । ସେଠାରେ ଚିତ୍କାର ଆଉ କାନ୍ଦିବାର ଶବ୍ଦ କେବଳ ଛାଇ ଗଲା ।

କେବେ ଦୁଃଖ ଦାୟକ ହୋଇ ଯାଇଥିଲା । ସବୁ ଲୋକ ନାନା ପ୍ରକାର ସେବା ଯତ୍ନ କରିବା ସତ୍ତ୍ୱେ ତାକୁ ହୋସରେ ଆଣି ପାରିଲେ ନାହିଁ । ତା'ର ଶରୀର ରୂପକ ପିଞ୍ଜରାରୁ ପ୍ରାଣ ପକ୍ଷୀ ଉଡ଼ି ଚାଲି ଯାଇଥିଲା ।

ହେଲେ ସିଏ ଏଭଳି ଅଚାନକ ପାଣିରେ କେଉଁ ପଡ଼ିଲା କାହିଁକି ଏଇ କଥାର ଖବର ନେବାକୁ ଗଲି ସେଇଠିକୁ ଯେଉଁଠି ବନଶୀ କାଠିରେ ପ୍ରତିଦିନ ମାଛ ଧରୁଥିଲା, ତ' ଦେଖିଲି ଗୋଟିଏ ଅଜଗର ସାପ ଚାପି ହୋଇ ପଡ଼ିଛି । ସେଇ ସାପର ଶରୀରରେ ମାଟି ଜମିଯାଇ ଘାସ ଉଠିଥାଏ । ଯୁବକ ପ୍ରତିଦିନ ସେଇ ସାପ ଉପରେ ବସି ବନଶୀ କାଠି ଫିଙ୍ଗୁଥିଲା । ସେଇଟା ଯେ ଏକ ସାପ ଥିଲା ତାକୁ ଜଣା ନଥିଲା । ବୋଧହୁଏ ସେଇ ଦିନ ସାପଟି ସାମାନ୍ୟ ହଲି ଯାଇଥିବ, ଫଳରେ ''ଆରେ ! ଏଇଟା କ'ଣ'' ଭାବି, ବହୁତ ଭୟରେ ପାଣିରେ ପଡ଼ି ଯାଇଥିବ ।

ଗାଁରୁ ଅନେକ ଲୋକ ଆସି ମାଟି ଖୋଳିଲେ । କୁରାଢ଼ୀରେ ହାଣି ସାପକୁ ମାରିଦେଲେ । ମୃତ୍ୟୁ ପରେ ଦେଖାଗଲା, ସାପର ଲମ୍ବ ବାରହାତ ଏବଂ ଘେର ଅଢ଼େଇ ହାତ ଥିଲା । ସେଇ ଦିନରୁ କନ୍ୟା କୂଳର ଲିଳା ସମାପ୍ତ ହୋଇଗଲା । ଡରରେ ହେଉ ବା ଦୁଃଖରେ ମୁଁ ବି ସେ ପଟେ ଆଉ ଦେଖି ପାରୁ ନାହିଁ ।

ଏଇ ଘଟଣାର ତିନ ଦିନ ପରେ ନଈରୁ ପାଣି ଆଣୁଥିବା ମୋର ଚାକର ପିଲା ସକାଳ ସକାଳ ଏକ ନିଃଶ୍ୱାସରେ ଦୌଡ଼ି ଆସି ଚିତ୍କାର କଲା ''ଆଜ୍ଞା ! ଆଜ୍ଞା !!'

ଗୋଟିଏ ସମୟରେ ''ପାନର ସ୍ୱାଦ ସୁପାରିରେ ଏବଂ ନିଦର ସ୍ୱାଦ ସକାଳରେ''ଢ଼ଗ କହୁଥିବା ସେଇଗୁଣରେ ବହୁତ ଧନ୍ୟବାଦ ଦେଇ ମୁଁ ଘୁଙ୍ଗୁଡ଼ି ମାରି ଶୋଇ ପଡ଼ିଥିଲି । ''ଆଜ୍ଞା ! ଆଜ୍ଞା !'' ଚିତ୍କାର କରି ମୋ ନିଦ ଭାଙ୍ଗୁଥିବା ହେତୁ ରାଗରେ ସେଇ ପଣସ ମଞ୍ଜି ଭଳି ମୁଣ୍ଡ ବାଲା ଚାକର ପିଲାକୁ ମୁହଁ ଆମ୍ବିଲା କରି କହି ଉଠିଲି ''କ'ଣ ଆଜ୍ଞା ! ଆଜ୍ଞା ! ହେଉଛୁ କିରେ ? ସକାଳ ସକାଳ ଦିନଟାକୁ ବର୍ବାଦ କରିବା ପାଇଁ ? ଯା.... ଏଇଠୁ ପଳେଇ ଯା ନ ହେଲେ ଏବେ ତୋର ଗାଲ ଫଟେଇ ଦେବି'' ।

ସେ କହିଲା ''ଆସନ୍ତୁ ନା, ଦେଖନ୍ତୁ ସେଇ ବାଙ୍କର କୂଳରେ କି ଜିନିଷଟିଏ ପଡ଼ିଛି ।'' ମୁଁ ଜଲ୍‌ଦି ଉଠି କରି ଦେଖି ଗଲି । ମଣିଷର ଶବ ପରି ଦେଖା ଗଲା । ମୁଁ ତାକୁ ବାହାରକୁ ଆଣିଲି । ଦେଖିଲି ''ଆରେ ୟେ'ଚ ଆର କୂଳକୁ ପ୍ରତିଦିନ ପାଣି ଆଣି ଆସୁଥିବା ସେଇ କୋଲ ଝିଅ ।''

*ଭାଷାନ୍ତର : ବାସୁଦେବ ସୁନାନୀ*



ଶ୍ରୀ ଭଗବତ ପ୍ରସାଦ ସାଠେଙ୍କ ଜନ୍ମ ୧୯୧୦ ମସିହାରେ । ପିଲାଟି ଦିନରୁ ସମାଜସେବା ଓ ଲଳିତ ତଥା ପରିଷ୍କୃତ ରଚି ପ୍ରତି ତାଙ୍କର ଆଗ୍ରହ ତାଙ୍କୁ ପରବର୍ତ୍ତୀ ଜୀବନରେ ସାହିତ୍ୟ ଓ ସମାଜସେବା ଦିଗରେ ବ୍ରତୀ କରାଇଥିଲା । ନ୍ୟାୟ ତଥା ସ୍ୱାଭିମାନ ପାଇଁ ତାଙ୍କର ସଂଘର୍ଷ ତାଙ୍କୁ ଆଜୀବନ ବିଦ୍ରୋହୀ ସଜେଇଥିଲା ପ୍ରତ୍ୟେକଟି କ୍ଷେତ୍ରରେ । ନିର୍ଦ୍ଦିଷ୍ଟଭାଷାର ସାହିତ୍ୟ ସୃଷ୍ଟି କରି ଜୀବନ ପ୍ରତିପୋଷଣ ତାଙ୍କ ସଂଘର୍ଷମୟ ଜୀବନର ଅଙ୍ଗ । ଗୋଦାନ, ମୃଗନୟନୀ ବ୍ୟତୀତ ତାଙ୍କର ଦ୍ୱାରା ବହୁ କାହାଣୀ ରଚିତ । 'ମଙ୍ଗତାର ପାଣିତକ' ଗଳ୍ପଟି ବିଭିନ୍ନ ଦୃଷ୍ଟିକୋଣରୁ ତାଙ୍କୁ ଡ୍ୱୋଗରୀ ସାହିତ୍ୟର ଆଦ୍ୟ କାହାଣୀ ଲେଖକର ସମ୍ମାନ ଦିଏ ।

# ମଙ୍ଗତାର ପାଣିଚକି

ମୁହାଣରେ ଭରଣର ଅଖା ଲଗେଇ ମଂଗତା ଚମାଖୁ ପିଇବାରେ ଲାଗିଥିଲା । ଅକସ୍ମାତ ଚାଲୁଥିବା ପାଣିଚକି ରହିଗଲା ।

- ଯାଉ ଭାସିସାଉ । ନିଜେ ନିଜେ ବିଡ଼ବିଡ଼େଇ ମଂଗତା ରାଗରେ ଉଠିଲା ଆଉ କୂଳର ଜଳଧାର ଦେଖିବାରେ ଲାଗିଲା । କୋଉଠୁ ଭାଙ୍ଗଥିବ ଭାବିଭାବି ସେ ନାଳର ତରେ ତରେ ଚାଲିବାରେ ଲାଗିଲା । ବର୍ଷାପାଣିର ଦୟାରୁ ବର୍ଷରେ ମାତ୍ର ଦୁଇମାସ ଚାଲୁଥିବା ମଙ୍ଗତାର ମୌସୁମୀ ପାଣିଚକି । ଆଉ ତାକୁ ବି କଂସେଇର ପିଲାମାନେ କୂଳଭାଙ୍ଗି ତାର ନାକେଦମ୍ କରିଦେଉଥିଲେ, ଆଉ ମଂଗତା ଠାରୁ ଗାଳିର ପ୍ରସ୍ୱାଦ ବି ପାଉଥିଲେ ।

ଗଣ୍ଡ ମଝିରୁ ଯୋଉଠୁ ସେ ପାଣିବନ୍ଧ କରି କ୍ୟ଼ାଳ ବାହାର କରିଥିଲା, କିଏ ଜଣେ ପଥରଟିକୁ ଉଠେଇ ଦେଇଥିଲା । ପାଣି କୂଳ ଭାଙ୍ଗି କଳକଳ କରି ବହି ଯାଉଥିଲା ଗଣ୍ଡ ଭିତରକୁ । ପଥରଟିକୁ ପୁଣି ତା ଜାଗାରେ ରଖିବା ଆଗରୁ ମଂଗତା ଇଆଡ଼େ ସେଆଡ଼େ ଆଖି ବୁଲେଇଲା । ଉପରପଟେ ମହମଦୁକୁ ଠିଆହୋଇଥିବା ଦେଖିଲା ।

- ଏ ମହମଦୁ, ତୁ ମୋ ଜୀବନଟାକୁ କାହିଁ ଖାଇବାରେ ଲାଗିଛ କି ରେ ? ସେ ରାଗରେ କହିଲା ।

ମହମଦୁ ବାସଙ୍ଗ ଫୁଲ ଚୁଷୁଥିଲା । ମଂଗତା ସେଠି ଅଛି ବୋଲି ସେ ଯେମିତି ମୋଟେ ଜାଣିପାରୁନି । ମଂଗତାର ରାଗଟିକେ ଧିମା ପଡ଼ିଗଲା, ଆଉ ସେତେବେଳେ ମହମଦୁର ଧ୍ୟାନ ମଂଗତା ଆଡ଼େ ଗଲା ।

- ନାଇଁ ବଡ଼ବା, ମୁଁ ପଥରଟା ଉଠେଇ ନଥିଲି ।

- ତୁ ଉଠେଇନୁ, ତାହେଲେ କ'ଣ ତୋ ବାପ ଉଠେଇଛି ? ବେଶି ପେଖନା ଦେଖାନା । ଇଲ୍‌ମଦିନ୍‌କୁ କହିବିତ ତୋର ହାତଗୋଡ଼ ଚୂନା କରିଦେବ । ପଥରକୁ ଠିକ୍‌ଭାବେ ରଖି ସେ ପାଣିଚକି ଆଡ଼େ ମୁହାଁଇଲା ବେଳେ ମହମଦୁ ତା ପଛେ ପଛେ ଚାଲିଆସିଲା । ମଂଗତା ଚମାଖୁର ଚିଲମ ଉଠେଇଲା ଆଉ ଗୁଡୁଗୁଡୁ କରି ମୁହଁରୁ ଧୂଆଁ ବାହାର କରିବାରେ ଲାଗିଲା । ମହମଦୁ ବାସଙ୍ଗର ଦୁଇ ତିନିଟା ଡ଼ାଳ ମଂଗତା ଆଡ଼େ ଫିଙ୍ଗିଦେଇ କହିଲା, ''ନେ ବଡ଼ ବା, ତୁ ବି ଫୁଲ ଚୁଷ୍‌'' ।

- ଯା, ବେଶି ଆସିଲା ଫୁଲ ଚୁଷେଇଲା ବାଲା । ଗରମ ଦ୍ୱିପହରରେ ବଡ଼ବା'କୁ ଦୁଃଖ ଦେବାକୁ ଲାଜ ଲାଗୁନି ତତେ ? ବିଡ଼ବିଡ଼େଇ ହୋଇ ମଂଗତା ଚମାଖୁ ପିଇବାରେ ଲାଗିଲା ।

ମହମଦୁ ଚୁପ୍‌ଥିଲା । କିଛି ସମୟ ପରେ କହିଲା - ବଡ଼ ବା, ତୁ ଏତେ ବୁଢ଼ା ହୋଇଗଲୁଣି, କୋଉଦିନ ଟିକଟ କଟିଗଲେ ଏ ପାଣିଚକି କିଏ ଚଲେଇବ ?

ଏ ପ୍ରସଙ୍ଗ ପହଞ୍ଚୁ ନ ପହଞ୍ଚୁଣୁ ମଂଗଟାର ଆଖି ଛଳଛଳେଇ ଆସେ । ନିଜର ବୋଲି ତାର କେହି ନାହିଁ ।

ମହମଦୁ ଉଠି ଯିବାରେ ଲାଗିଲା । ମଂଗଟା ତାକୁ ଅଟକେଇ ରଖିଲା । ଆରେ, ରହିଯା । ଯିବାର ତ ଅଛି ହିଁ ।

- ବଢ଼ବା, ଛେଳିମାନେ ଲଟାର ଫାସରେ ଫସିଗଲେ ଗଲା । ଯାଇକି ଦେଖେଁ । ଏଠି ତୋ ପାଖରେ ବସିବାରେ କି ଲାଭ । ମରିବୁ ତ ତୋ ପାଣିଚକି ଜଣେ ଧୀବର ହିଁ ସମ୍ଭଳେଇବ ।

- କାହିଁକି ରେ ? ଧୀବରକୁ କଣ ମୋତେ ଧାର ସୁଝିବାର ଅଛି ? ଯିଏ ବି ଏ ବୁଢ଼ା ବୟସରେ କାମରେ ଆସିବ, ସେ ହିଁ ପାଣିଚକି ସମ୍ଭଳେଇବ ।

ମହମଦୁ ମଂଗଟାକୁ ବିରକ୍ତ କରେ । କିନ୍ତୁ ଖରାପ ସମୟରେ ବି ସିଏ ହିଁ କାମରେ ଆସେ । ମହମଦୁ କୁ କୌଣସି ଲୋଭ ତ ନଥିଲା । ହଁ ଏଇଟା ନିଶ୍ଚିତ ଥିଲା ଯେ ପାଣିଚକିର ଆବାଜରେ ତାକୁ ବଢ଼ ଗାଢ଼ନିଦ ଆସୁଥିଲା । ଯେତେବେଳଯାଏଁ ପାଣିଚକି ଚାଲେ ମହମଦୁର ସେଇଠି ଡେରା ବାନ୍ଧିଥାଏ । ଏଇ କଥାରେ ତା ବାପ ଇଲ୍‌ମଦିନ୍ ତାକୁ କହେ,

- ବଢ଼ବା ମରିଗଲେ ଅନ୍ୟକିଏ ତତେ ସେଠି ଶୋଇବାକୁ ଦେବ । ଭୋଳା ମହମଦୁଟା ଭାବେ ଯେ ଯଦି ବଢ଼ବା ମରିଯିବ ତାହେଲେ ପାଣିଚକିଟା ତାର ହୋଇଯିବ ।

ମଂଗଟାକୁ ଜର ଆସୁଥିଲା । ମହମଦୁର କଥା ତାକୁ ଭାବିବାକୁ ବିବଶ କରିଦେଇଥିଲା । ଏଦିନରେ ମହମଦୁ ହିଁ ତାର ଏକମାତ୍ର ସାହାରା ।

ଦିନେ ମଂଗଟା ମହମଦୁକୁ ଚାକି ରହିଲା ସାରାଦିନ । କିନ୍ତୁ ସେ ଆସିଲାନି । ସୂର୍ଯ୍ୟ ଅସ୍ତହେଲା, ମଂଗଟା ପାଣିଚକିର କବାଟ ବନ୍ଦକଲା ଆଉ ମହମଦୁର ଖବର ଜାଣିବାକୁ ବାହାରି ପଡ଼ିଲା । ଜର ଆଉ ଅନ୍ଧାର ମଂଗଟାଉପରେ ମାଡ଼ି ପଡୁଥିଲା । କିନ୍ତୁ ସେ ହାର ମାନିଲାନି ।

ଦିନବେଳାର କଥାଟା - ଘଟି ସାରିଥିଲା । କିନ୍ତୁ ମଂଗଟା ଯାଏଁ ପହଞ୍ଚି ପାରି ନଥିଲା । କଥାଟା ଏପରି ଥିଲା ଯେ ସାଧୁ ସାହୁର ଦୋକାନରେ ଗୁଲୁ ଧୀବର ଇଲ୍‌ମଦିନ୍‌କୁ ଥଟ୍ଟା କରି କହିଲା, ‘‘ହଇରେ, ତୁ ମହମଦୁକୁ ବଢ଼ବା ପାଖରେ ଶୁଆଇ ଦଉ, ପାଣିଚକି ଉପରେ ନଜରଟା ଅଛି ନା କଣ ?’’

ଇଲ୍‌ମଦିନ୍‌ର ରାଗ ପହଞ୍ଚିଗଲା ପଞ୍ଚମରେ............

ଆଉ ଯିବାକୁ ଦେବିନି, ଖାଇବା ପିଇବାକୁ ଆମର ବି ବହୁତ ଅଛି ।

ଯାଠୁ ଆଉ ଅଧିକେ ହୁଅନ୍ତା କଣ । ଗୁଲୁଥିଲା ମଂଗଟାର ଦୂର ସଂପର୍କୀୟ । ଇଲ୍‌ମଦିନ୍ ଆଉ ମହମଦୁ ପାଇଁ ତ କଥା ସରିଗଲା, କିନ୍ତୁ ମଂଗଟା ତରଫରୁ ଜମା ନୁହେଁ । ମହମଦୁ କାନ୍ଦି କାନ୍ଦି ଶୋଇପଡୁଥିଲାବେଳେ ମଂଗଟା କୁଣ୍ଢୁ କୁଣ୍ଢୁ ହୋଇ ସେଠି ପହଞ୍ଚିଲା । ସେ ଇଲ୍‌ମଦିନ୍ କୁ ପଚାରିଲା, ମହମଦୁକୁ ଡ଼ାକିଲା, ଗାଳିକଲା । ଟିକିଏ

ସମୟ ବସି ପୁଣି ଜୋର୍ ଜୋର୍‌ରେ ପାଟିକଲା, ପାଟିକରି କାନ୍ଦିଲାବି । ପଡ଼ୋଶୀମାନେ ବି ଆବାଜ୍ ଶୁଣିଲେ । କିନ୍ତୁ ଇଲମଦିନ ମହମଦୁକୁ ତା ସାଥିରେ ଯିବାକୁ ଦେଲାନି ।

ପରଦିନ ପ୍ରଥମ ପ୍ରହରରେ ହୁରି ପଡ଼ିଗଲା.......... ମଂଗଚା ପାଣିଚକି ପାଖେ ମରି ପଡ଼ିଛି । ରାତିରେ ଇଲ୍‌ମଦିନ୍ ଘରେ ଗାଳି କରୁଥିଲା । ଏଇ କଥାରେ ସେମାନେ ମଂଗଚାକୁ ମାରି ପକାଇଲେ ଆଉ ପାଣିଚକିରେ ଫିଙ୍ଗି ଆସିଲେ । ଲୋକଙ୍କ ମୁହଁରେ ଗୋଟିଏ କଥା । ଗୁଲୁ ଧୀବରବି ହଁ' କୁ ନ' କରି କହି ବୁଲୁଥିଲା ।

ପୋଲିସ ଆସିଲା । ଇଲ୍‌ମଦିନ୍ ଆଉ ମହମଦୁ ଦୁଇଜଣଙ୍କୁ ଲାଗିଲା ହାତକଡ଼ି । ତାପରେ ହିଁ ନିଆଗଲା ପାଣିଚକିର ତଲାସି । ମଂଗଚାର ବାସ୍କେଟ୍ ଟା ଝୁଲୁଥିଲା ଖୁଣ୍ଟିରେ । ତା ଭିତରେ ଥିଲା ଖଣ୍ଡେ ଲୋଟାକୋଟା କାଗଜ । ଦାରୋଗା ବାବୁ ପ୍ରଥମେ ତାକୁ ଖୋଲି ପଢ଼ିଲେ । ନିଜ ସାଥୀଙ୍କୁ ବି ପଢ଼େଇଲେ । ସମସ୍ତେ ମୁଣ୍ଡ ଟୁଙ୍ଗାରିଲେ । କାଗଜ ଟା ଇଲ୍‌ମଦିନ୍ ହାତରେ ଦେଇଦେଲେ ଆଉ ସେମାନଙ୍କ ହାତକଡ଼ି ଖୋଲି ପୋଲିସବାଲେ ଚୁପ୍ ଚାପ୍ ଚାଲିଗଲେ ।

*ଭାଷାନ୍ତର : ମିତାଲି ମଧୁମିତା ରଥ*



ସିନ୍ଧୀ ସାହିତ୍ୟର ଆଦ୍ୟଗଳ୍ପ 'ହୁର ମଖୀ ଜା' (ମକ୍ଷିକା ହ୍ରଦର ଢକାୟତ) ର ଲେଖକ ଶ୍ରୀ ଲାଲଚନ୍ଦ ଅମରଚନ୍ଦ ଡିକେମଲ ଜଗଚ୍ୟାଣୀ । ତାଙ୍କର ଜନ୍ମ ବର୍ତ୍ତମାନ ପାକିସ୍ତାନ ଅନ୍ତର୍ଗତ ସିନ୍ଧ ପ୍ରଦେଶର ହୈଦରାବାଦ ଠାରେ ୧୮୮୫ ମସିହାରେ ଜାନୁୟାରୀ ୨୫ ତାରିଖରେ । ଆଜୀବନ ସାହିତ୍ୟ ସାଧନାରତ ଶ୍ରୀ ଲାଲଚନ୍ଦ ଅମରଚନ୍ଦ ଡିକେମଲ ସିନ୍ଧୀ ସାହିତ୍ୟରେ ସମାଲୋଚନାର ମୂଳଦୁଆ ପକାଇଥିଲେ । ତାଙ୍କ ଭାଷା ଓ ଶୈଳୀରେ ଥିଲା ଏକ ଅପୂର୍ବ ନିଜସ୍ୱତା । ସିନ୍ଧୀ ସାହିତ୍ୟର ପ୍ରାୟ ସମସ୍ତ ବିଭାଗରେ ଲେଖନୀ ଚାଳନା କରିଥିଲେ ସେ । ୧୯୧୪ରେ ରଚିତ 'ହୁର ମଖୀ ଜା' (ମକ୍ଷିକା ହୁଦାର ଢକାୟତ) ସିନ୍ଧୀ ସାହିତ୍ୟ ଆଦ୍ୟ ଗଳ୍ପ ଭାବରେ ସ୍ୱୀକୃତ ।

# ମକ୍ଷିକା ହ୍ରଦର ଡ଼କାୟତ

'ତୁମେ ମକ୍ଷିକାର ଡ଼କାୟତ' ବୋଲି ସିନ୍ଧୀରେ ଏକ ପ୍ରବାଦ ହୋଇଗଲାଣି । ସେହି ଡ଼କାୟତମାନେ, ମକ୍ଷିକାର ତସ୍କର ୧୮୯୫ ମସିହା ପାଖାପାଖି ପୁରା ସିନ୍ଧୁ ଅଞ୍ଚଳରେ ବିଶେଷକରି ଥରପାରକର ଜିଲ୍ଲାରେ ଏପରି କେଲେଙ୍କାରୀ ପରିସ୍ଥିତି ସୃଷ୍ଟିକଲେ, ସରକାରଙ୍କୁ ଯେଉଁଭଳି ଅପଦସ୍ଥ ଏବଂ ଉଦବିଘ୍ନ କଲେ ଯେ, ଯଦି କୌଣସି ଚତୁରକଥାକାର ହୋଇଥାନ୍ତା, ତାହେଲେ ସମସ୍ତ ତଥ୍ୟ ଏକାଠିକରି କୌଣସି ଏକ ସୁନ୍ଦର ଉପନ୍ୟାସ ଲେଖି ପରିଥାନ୍ତା । ମୁଁ ନିଜ ମଧ୍ୟରେ ଏତେ ସାହସ ପାଉନାହିଁ, ଯଦ୍ୟପି ସମସ୍ତ ତଥ୍ୟ ଓ ବିବରଣୀ ମୋ ପାଖରେ ଗଚ୍ଛିତ ଅଛି । ମୁଁ ଏଠାରେ ଏହି ତଥ୍ୟ କେବଳ ପାଠକଙ୍କର ମନୋରଞ୍ଜନ ପାଇଁ ଉପସ୍ଥାପନ କରୁଛି ।

ମକ୍ଷିକା ହ୍ରଦରୁ ସାଂଘଡ଼, ପାଖାପାଖି ଅଧକୋଶ ଦୂରରେ ଅବସ୍ଥିତ । ଏହାର ପ୍ରସ୍ଥ ୧୬ କୋଶ ଏବଂ ଲମ୍ବା ୩୨ କୋଶ ଅଟେ, ଅର୍ଥାତ ଏହାର କ୍ଷେତ୍ରଫଳ ୫୧୨ ବର୍ଗକୋଶ ଅଟେ । ହ୍ରଦର ଆଖପାଖରେ କଣ୍ଟାବୁଦା ଓ ବରକୋଳି ଆଦିର ବୃକ୍ଷ ସର୍ବଦାପୂର୍ଣ୍ଣ ହୋଇ ରହିଥାଏ । ବର୍ଷାଋତୁରେ ପାଣି ବଢ଼ିବା ଦ୍ୱାରା ହ୍ରଦରେ ପଦ୍ମନାଡ, ପୁଷ୍କର, ପାଣିକନ୍ଦା ଆଦି ଏତେ ସଂଖ୍ୟାରେ ମିଳେ ଯେ ଏହାକୁ ଖାଇବା ଲୋକଙ୍କ ଅଭାବ ହୋଇଥାଏ । ପାଣିଥିବା ସମୟରେ ଗହମ, ସୋରିଷ, ଚଣା ଓ ବାଦାମ ଏବଂ ପାଣି କମିଯିବାପରେ ଜୁଆର ଫସଲ ମଧ ହୋଇଥାଏ । ସେଠି ମାଛ ମଧ ଅଧିକ ମିଳେ । ହ୍ରଦ ମଧରେ ଅନେକ ଛୋଟ ଛୋଟ ଦ୍ୱୀପ ଅଛି । ଡ଼ାକୁମାନେ ଏହି ହ୍ରଦକୁ ନିଜର ମୁଖ୍ୟ ଆଡ୍ଡାସ୍ଥଳୀ କରିଛନ୍ତି । ଲୁଟତରାଜ୍ ସମୟରେ ଯାହାବି ଧନ ଦୌଲତ ମିଳେ, ସେମାନେ ତାକୁ ଆଣି ଏଠି ଜମା କରନ୍ତି ।

ଆରମ୍ଭ ସମୟରେ ଡ଼କାୟତ ଦଳରେ କେବଳ ପାଞ୍ଚଜଣ ଲୋକଥିଲେ - ବଚୁ ଖାସକେଲୀ, ପୀରୁ, ସାନ, ଚଗିୟୋ ଚାଁଗ, ଇସୋଦାହିଡ଼ୀ ଓ ଖମୀସୋବସାନ । ପାଞ୍ଚଜଣ ଯାକ କିଂଗରୀର ପୀରବାବାଙ୍କ ଲୋକଥିଲେ । ପାଞ୍ଚଜଣ ବିଭିନ୍ନ ସ୍ଥାନରୁ ଆସି ଏକଜୁଟ ହୋଇଥିଲେ । ବଚୁ ବରିୟାମର ପୁଅଥିଲା । ପୀରବାବା ଗସ୍ତ କରୁଥିବା ସମୟରେ ତାଙ୍କ ପାଖରେ ପହଞ୍ଚିଲେ । ବରିୟାମ ପୀରବାବାଙ୍କୁ ଭୋଜନ ପାଇଁ ଆମନ୍ତ୍ରଣ କଲେ । ସେଠାରେ କୌଣସି କଥାରେ ପୀରବାବାଙ୍କ ଚାକର ଛୁଟଲ ସାଙ୍ଗରେ ବଚୁର ଝଗଡ଼ା ହୋଇଗଲା ଓ ବଚୁ ତାକୁ ହତ୍ୟାକରି ଫେରାର ହୋଇଗଲା ।

ସରକାରୀ କର୍ମଚାରୀ ବରିୟମ ଉପରେ ଚାପ ପକାଇ ତା'ପୁଅକୁ ପୋଲିସ ହାତରେ ଦେବାପାଇଁ କହିଲେ । ପୁଅଟି ପଳାୟନ କରିଥିଲା, ସେ ତାକୁ କେଉଁଠି ଆଣିଥାନ୍ତା ? ଶେଷରେ ବରିୟମକୁ ବାନ୍ଧି ଜେଲରେ ଭର୍ତ୍ତି କରିଦେଲେ, ଯେଉଁଠ ବିଷଖାଇ ସେ ପ୍ରାଣତ୍ୟାଗ କଲା । ସେ କୌଣସି ମନପସନ୍ଦ ସାଥୀ ଖୋଜୁଥିବା ସମୟରେ ପୀରୁ ଆସି ତା'ସହିତ ଯୋଗ ଦେଲା ।

ପୀରୁ ଭିରେର ବାସିନ୍ଦା ଥିଲା ଏବଂ ତା'ଉପରେ ସାଂଘଡର ତେଜୁଲାଲେର ଚିକ୍ରି ଥିଲା । ତା' ନାଁରେ ୱାରେଣ୍ଟ ମଧ ଜାରି କରାଯାଇଥିଲା । ସେ ସେଠାରୁ ପଳାୟନ

କରି ବଚୁ ସାଙ୍ଗରେ ମିଶିଗଲା । ଏହି ଦିନ ମାନଙ୍କରେ ଟଗିଯୋଟାଁଗ ଡ଼କାୟତି କରି ଓ ଇସୋ ଦାହିଡ଼ୀ ନିଜ ଗାଁରେ ଚୋରିକରି ପଳାୟନ କଲେ ଏବଂ ବଚୁର ଗୋଷ୍ଠୀରେ ସାମିଲ ହେଲେ । ପଞ୍ଚମ ଥିଲା ମୋରେ ବାଖୋରୋ ବସାନ । ଖମୀସୋ ସେହିଦିନ ମାନଙ୍କରେ ଦାଦୀ ନାମକ ଏକ ବିବାହିତା ସ୍ତ୍ରୀ ଉପରେ ମୁଗ୍ଧ ହୋଇ ଖଣ୍ଡାରେ ଦାଦୀର ପଚ ଉସ୍ମାନର ହାତଗୋଡ଼ କାଟି ଦେଇ ପଳାୟନ କଲା ଓ ବଚୁର ଦଳରେ ମିଶିଗଲା ।

ମକ୍ଷିକା ହ୍ରଦରେ ଯେବେ ପାଣି କମିଯାଉଥିଲା, ସେତେବେଳେ ଏହି ଦଳ ଏଠାରେ ଆସି ଡ଼େରା ପକାଉଥିଲେ, ନଚୁବା ଏଦଳ ବୈଠକ ହେଉଥିଲା ବେରଛନ୍ ଗାଁର ଅଲୀବକ୍ସର ଘରେ, ଯିଏ ସ୍ୱୟଂ ଏକ ପ୍ରସିଦ୍ଧ ଡ଼ାକୁ ଓ ଶକ୍ତିମାନ ପୁରୁଷ ଥିଲା ।

ଏହି ଦଳ ପ୍ରଥମ ଓ ବଡ଼ ଡ଼କାୟତି ରାଜା ମୁହମ୍ମଦ ନଂବରଦାରଙ୍କ ପ୍ରେରଣାରେ କରିଥିଲେ । ରାଜା ମୁହମ୍ମଦ ମିଠ୍ଡ଼ାଉର ବାସିନ୍ଦା ଥିଲା ଏବଂ ଏହି ଡ଼ାକୁମାନଙ୍କର ରକ୍ଷାକର୍ତ୍ତା ଥିଲା । ମିଠଡ଼ାଉର କିଛି ମଇଁଷୀ ଚୋରୀ ହେଲା ଓ ରାଜା ମୁହମ୍ମଦଙ୍କ ଠାରେ ଏହାର ରିପୋର୍ଟ ହେଲା । ଖବର ନେବାପାଇଁ ସେ ନିଜ ସିପାହୀ କାରୋକୁ ପଠାଇଲେ । କାରୋ ପାଦଚିହ୍ନ ବାରି ବାର ମୀରର ସୀମାରେ ଟରୋଂର ଗାଁରେ ପହଞ୍ଚିଲା । ସେ ସେଠାରେ ଚୋରୀ କରିଥିବା ଅପରାଧରେ ଶର ଓ ଚାଣ୍ଡିଆ ଜାତିର କିଛି ଲୋକଙ୍କୁ ଧରିଲା । ମୀରର କର୍ମଚାରୀଙ୍କୁ ଯେତେବେଳେ ଏହି ଖବର ମିଳିଲା, ସେ ସଙ୍ଗେ ସଙ୍ଗେ ସେଠି ପହଞ୍ଚି କାରୋକୁ ଦଉଡ଼ିରେ ବାନ୍ଧି ବହୁତ ମାଡ଼ ଦେଲା ଓ ଖୁବ୍ ଗାଳିଗୁଲଜ୍ କଲା । ସେ ଯାଇ ଏହାର ପ୍ରାର୍ଥନା/ନାଲିସ ନିଜ ମାଲିକ ପାଖରେ କଲା । ଶୁଣିବା ମାତ୍ରକେ ରାଜା ମୁହମ୍ମଦର ଶରୀରରେ ଯେମିତି ନିଆଁ ଲାଗିଗଲା । ସେ ତତ୍କ୍ଷଣାତ୍ ବଚୁ ଓ ପୀରୁକୁ ଡ଼ାକି କହିଲା, ମୁଁ ସଦାବେଳେ ତୁମର ରକ୍ଷା କରିଛି, ଏବେ ତୁମେ ଏଇ ବେଈଜତିର ପ୍ରତିଶୋଧ ମୀର ଠାରୁ ନିଅ ।

ସେ ଦୁହେଁ କହିଲେ, ମାଲିକ, ଆପଣ ଚିନ୍ତା କରନ୍ତୁ ନାହିଁ । ଆମେ ତାର ଏପରି ଦଶା କରିବୁ ସେ ଜୀବନସାରା ଆମକୁ ମନେ ରଖିଥିବ ।

ସେମାନେ ଆଖପାଖରେ ଯେତେ ନାମୀ ଚୋର ଡ଼ାକୁଥିଲେ, ସମସ୍ତଙ୍କୁ ଖବର ପଠାଇଲେ । ଆସି ଆମ ସହିତ ଯୋଗ ଦିଅ, ତାହେଲେ ଆମର ସାମ୍ରାଜ୍ୟ ତିଆରିବା । ପୋଲିସ ଆମ ସାଙ୍ଗରେ ଅଛି । କୌଣସି ଡ଼ରଭୟ ନାହିଁ । ଖଣ୍ଡା,ବନ୍ଧୁକ ମଧ୍ୟ ମହଜୁଦ୍ ଅଛି ।

ଏହାପରେ ସାଂଘଡ଼ର ପରିଓ ର ପୁଅ ଗୁଲମୋଟୀ, ମକ୍ଷିକାର ବାଲୁଗାହେ, ମୁଗରାରେ ଜମିଦାରୀର ମିସରୀ, ବାଖୋରେର ରଣା ବସାନ, ଚୋଟିୟାରେ ର ମୀରଖାନର ପୁଅ ପଲଟୁଗାହେ ଏବଂ ତାର ଭାଇ ସୁମ୍ମାର, ଏହି ଛ'ଜଣ ଯେଉଁମାନେ ରୋହିଡ଼ି ପୀରବାବାଙ୍କ ଚେଲା ଥିଲେ, ବଚୁର ଦଳରେ ସାମିଲ ହେଲେ ।

ବଚୁକୁ ଦଳର ଲୋକମାନେ ବାଦଶାହ କଲେ, ଯେହେତୁ ସେ ପ୍ରଥମେ ଏହି ଲାଇନ୍‌କୁ ଆସିଥିଲା ଏବଂ ବନ୍ଧୁକ ଚଳାଇବାରେ ନିପୁଣ ଓ ଲକ୍ଷ୍ୟ ଭେଦ୍ୟ ଥିଲା ।

ଶାରିରୀକ ଦୃଷ୍ଟିରୁ ସେ ଗେଡ଼ା ଓ ପତଳା ଥିଲା, ଶକ୍ତିରେ ସେମିତି କିଛି ଖାସ୍ ନଥିଲା । ହେଲେବି ସେମାନଙ୍କ ଭିତରେ କିଛି ସଂଭ୍ରମତା ଥିବାରୁ, ସେମାନେ ତାର ଅଧିକାର କ୍ଷୁର୍ଣ୍ଣ କରି ନଥିଲେ । ଶାରିରୀକ ଦୃଷ୍ଟିରୁ ପୀରୁ ବଳବାନ, ଉଚ୍ଚାପୁରା, ପର୍ବତଭଳି ପହିଲମାନ୍ ଥିଲା, ତାକୁ ମନ୍ତ୍ରୀ ବନାଗଲା । ଖମୀସାଙ୍କୁ ଦୁର୍ଗ ରକ୍ଷକ କରାଗଲା । ଅନ୍ୟମାନେ ଏହି ରାଜକୀୟ ଦରବାରର ପରିଷଦ ହେଲେ । ଏହାପରେ ସେମାନେ ସଜବାଜ ହୋଇ ଘୋଡ଼ାରେ ବସି ମୀରର ଇଲାକାକୁ ଆସି ଏବଂ ତାର ଘର ଉପରେ ଆକ୍ରମଣର ଧ୍ୱନୀଦେଇ ଲଢ଼େଇରେ ମାତିଗଲେ । ସେମାନେ ସାଧାଣ ଡ଼କାୟତଙ୍କ ପରି ଲୁଚିଛପି, ମୁଖା ଲଗାଇ ଅନ୍ଧାର ରାତିରେ ଆସିନଥିଲେ ବରଂ ସ୍ୱଷ୍ଟ ଦିବାଲୋକରେ ପ୍ରତିଷ୍ଠିତ ଲୋକଙ୍କ ପରି ଆସି ମୀରର ସମସ୍ତ ସମ୍ପତ୍ତି, ଗହଣା, ଅଳଙ୍କାର, ଖଣ୍ଡା ବନ୍ଧୁକ, ଜିନିଷପତ୍ର ଆଦି ନେଇ ନଥିଲେ ବରଂ ତା'ର ଏକ ମୃଗନୟନୀ, କ୍ଷୀଣକଟୀ ସୁନ୍ଦରୀ କନ୍ୟା ମଧ୍ୟ ହରଣ କରି ନେଲେ । ପରେ ବଚୁ ଓ ଏବଂ ସେଇ ଝିଅ ପରସ୍ପର ପ୍ରେମବନ୍ଧନରେ ଆବଦ୍ଧହୋଇ ବିବାହ କରିନେଲେ । ବଚୁ ନିଜର ବନ୍ଧୁ ପୀରଲଗାରୀ ଗ୍ରାମରେ ଚୌଧୁରୀ ଖୁଦାବକ୍ସର ଘରେ ତାକୁ ରଖିଲା । ଯେତେବେଳେ ତାକୁ ସୁଯୋଗ ମିଳୁଥିଲା, ସେ ସେଠାକୁ ଆସି ନିଜ ସ୍ତ୍ରୀ ସାଙ୍ଗରେ ରହୁଥିଲା ଏବଂ ତା'ର ସାନିଧ୍ୟର ଆନନ୍ଦ ପାଉଥିଲା ।

ମୀର ନିଜର ଦୁଇ ରକ୍ଷୀ ମଦର୍‌ଖାଁ ଓ ଜହାନଖାଁ କୁ ନେଇ ସଂଘଡ଼ର ସୁବେଦାର କୁମ୍ଭେଖାନ ଠାରୁ ସେ ସାହାଯ୍ୟ ମାଗିଲା । ସୁବେଦାର କହିଲା ଯଦି ତୁମେ ଲୋକଟାକୁ ଚିହ୍ନଟ କରିପାରିବ ମୁଁ ତାକୁ ଧରେଇଦେବି । ଯଦିଓ ତାହା ସବୁଠାରୁ ଅସମ୍ଭବ ଥିଲା । ବହୁତ ଖୋଜ ଖବର କରାଗଲା, କିନ୍ତୁ ସବୁ ବ୍ୟର୍ଥ, ଯେହେତୁ ସେମାନେ ମକ୍ଷିକାହ୍ରଦ ରେ ସୁରକ୍ଷିତ ଥିଲେ । ପାଣିରାସ୍ତା ଦେଇ ସେହି ଦ୍ୱୀପକୁ ଯିବାରାସ୍ତା ସେମାନଙ୍କୁ ହିଁ ଜଣାଥିଲା । ମୀର ଲୋକମାନେ ନିଜ ଭାଗ୍ୟକୁ ନିନ୍ଦି ନିରାଶ ହୋଇ ଫେରି ଆସିଲେ । ଏହାପରେ ଡ଼ାକୁମାନଙ୍କ ଚର୍ଚ୍ଚା ଆରମ୍ଭ ହୋଇଗଲା । ସମଗ୍ର ଅଞ୍ଚଳରେ ଆତଙ୍କ ଛାଇଗଲା । ସମସ୍ତ ସମ୍ବାଦପତ୍ର ଡ଼ାକୁମାନଙ୍କର କ୍ରିୟାକଳାପର ପୃଷ୍ଠା ମଣ୍ଡନ କଲା । ସେମାନେ ଅନେକ ରକ୍ତପାତ ମଧ୍ୟ କଲେ । ପୋଲିସର ଚଳିଆ ଅଫିସର ତାଙ୍କ ସହିତ ମିଶିଥିଲେ, ସେଥିପାଇଁ ତାଙ୍କ ମନକୁ ଯାହା ଆସୁଥିଲା, ତାହା କରୁଥିଲେ । କିଛି ପଦସ୍ଥ ଅଫିସର ମାନଙ୍କ ବିଷୟରେ ଶୁଣାଯାଉଥିଲା ଯେ ସେମାନେ ମଧ୍ୟ ତାଙ୍କ ସହିତ ସମ୍ମିଳିତ ହୋଇ କିଛି ମୋଟା ଅଙ୍କର ଲାଭ ପାଉଥିଲେ । ଶୁଣାଯାଏ ଯେ, ଘିଅର ଡ଼ବା ଭିତରେ ଟଙ୍କା ଭରି ପଠାଯାଉଥିଲା, ଆଉ କିଛି, ଆଉ କିଛି ।

ସେମାନଙ୍କ ଦ୍ୱିତୀୟ ବଡ଼ ଡ଼କାୟତି ନୌଶହରେ ଫରିଜ୍‌ର ଏକ ବଣିଆ ଘରେ, ଯେଉଁଠାରୁ ଏକଲକ୍ଷ ଟଙ୍କା ପର୍ଯ୍ୟନ୍ତ ସମ୍ପତ୍ତି ହସ୍ତଗତ ହେଲା । ସେଠାରେ ମଧ୍ୟ ପୋଲିସ ପାଦଚିହ୍ନକୁ ଅନୁସରଣ କରି ସାଂଘଡ଼ ପର୍ଯ୍ୟନ୍ତ କଲେ, ସେଠିକାର ଇନ୍ସପେକ୍ଟର ଜ୍ୱାଲାସିଂହ ମଧ୍ୟ ତଲାସୀ କାର୍ଯ୍ୟରେ ଲାଗିଗଲେ, କିନ୍ତୁ ସବୁ ନିଷ୍ଫଳ ହେଲା । ସେଠାକାର ତ ପୋଲିସ ଚାଲିଗଲେ, କିନ୍ତୁ ଜ୍ୱାଲାସିଂହ ଡ଼ାକୁମାନଙ୍କ ସନ୍ଧାନରେ ଲାଗି ରହିଲେ । ସେ

କୁଆ ପରି ଚତୁର ଥିଲେ । ଶିଘ୍ର ତାଙ୍କୁ ଜଣା ପଡ଼ିଲା ଯେ କେଉଁ କେଉଁ ସମ୍ମାନସ୍ପଦ ଲୋକ ଡ଼ାକୁମାନଙ୍କ ସହିତ ମିଶିଥିଲେ, ତେଣୁ ସେ ପ୍ରଥମେ ତାଙ୍କ ଉପରେ ଚାପ ପକାଇଲେ - କହିଲେ, ସତ କହିବ କି ନାହିଁ ?

କିନ୍ତୁ ସମସ୍ତେ ଏକା ସ୍ୱରରେ କହିଲେ - ଆମକୁ କିଛି ଜଣା ନାହିଁ ।

ଜ୍ୱାଲାସିଂହ ଧୈର୍ଯ୍ୟ ରଖିଲେ - କିଛି କଥା ନାହିଁ - ଦେଖିନେବି । ତାଙ୍କୁ ବଦ୍‌ମାସ ମାନଙ୍କ ଠିକଣା ମିଳିଗଲେ, ତୁମ୍ଭମାନଙ୍କୁ ମଧ ନାକରେ ରସି ପକାଇ ଦେବି ।

କିନ୍ତୁ ମଣିଷ ଯାହା ଚିନ୍ତାକରେ ଫଳ ହୁଏ ଓଲଟା । ପ୍ରତିବର୍ଷ ଚତୁର୍ଦ୍ଦଶୀରେ ସାଂଘଡ଼ ଅଞ୍ଚଳରେ ବହରମ ଶେରବରୀରେ ବଡ଼ ମେଳା ହୁଏ, ଯେଉଁ ଲୋକଙ୍କ ପ୍ରବଳ ଭିଡ଼ ହୁଏ । ଏ ବର୍ଷ ମେଳା ଗତ ବର୍ଷଠାରୁ ଜିଣିଗଲା । ଜ୍ୱାଲାସିଂହ ପାଞ୍ଚ ସାତଜଣ ସିପାହୀଙ୍କୁ ସାଙ୍ଗରେ ନେଇ ଡ଼ାକୁମାନଙ୍କୁ ଖୋଜିବା ପାଇଁ ଏଠାକୁ ଆସିଥିଲେ । ଗୁଳିଭର୍ତ୍ତି ବନ୍ଧୁକ ଗୋଟିଏ ଖଟରେ ରଖି ଆଉ ଏକ ଖଟରେ ପୁରା ବସିଛନ୍ତି ନା ନାହିଁ, ଗୁଳିବର୍ଷଣ ଆରମ୍ଭ ହୋଇଗଲା । ସେ ବହୁତ ଚେଷ୍ଟା କଲେ ବନ୍ଧୁକଟି କରାୟତ କରିବା ପାଇଁ, ଶତ୍ରୁ ସହିତ ଲଢ଼େଇ କରିବାକୁ, କିନ୍ତୁ ଏ ମଧ୍ୟରେ ଗୋଟିଏ ଗୁଳି ତାଙ୍କର କାନମୁଣ୍ଡାରେ ବାଜିଲାଯେ ଶକ୍ତିମାନ ପୁରୁଷଟି ସେଠି ଟଳି ପଡ଼ିଲେ ।

ଡ଼ାକୁମାନଙ୍କୁ ଜଣାଥିଲାଯେ ଜ୍ୱାଲାସିଂହ ତାଙ୍କ ପଛରେ ଲାଗିଛି । ଜ୍ୱାଲାସିଂହ ସେମାନଙ୍କୁ ଧରାଇବା ପୂର୍ବରୁ, ସେହି ବଳବାନ ଲୋକଟିକୁ ଶେଷକରି ଦେବା ପାଇଁ ପୂର୍ବରୁ ପ୍ରସ୍ତୁତ ହୋଇ ଲୁଚି ବସିଥିଲେ ।

ଏହାପରେ ଡ଼ାକୁ ମାନଙ୍କ ସହ ପୁଲିସର ଶତୃତା ବଢ଼ିଗଲା । ପୋଲିସ ଅଣ୍ଟା ଭିଡ଼ି ସେମାନଙ୍କ ପଛେ ଲାଗିଗଲା । କିନ୍ତୁ ଏହି ସମୟଭିତରେ ଡ଼ାକୁମାନଙ୍କ ଦଳ ବହୁତ ଶକ୍ତିଶାଳୀ ହୋଇଯାଇଥିଲା । ନଅଟି ସ୍ଥାନରେ ସେମାନଙ୍କର ଆଡ୍ଡା ସ୍ଥାପିତ ହୋଇଥିଲା । ସେମାନଙ୍କ ବାଦଶାହାରେ ଲୋକେ ବହୁ ସଂଖ୍ୟାରେ ଏକତ୍ର ହୋଇଗଲେ । କେବଳ ସାଂଘାଡ଼ରେ ହିଁ ସେମାନଙ୍କର ସଂଖ୍ୟା ଦେଢ଼ ହଜାରରେ ପହଞ୍ଚି ଯାଇଥିଲା । ସେମାନେ ଡ଼କାୟତି କଲେ ଏବଂ ପୋଲିସ ଉପରେ ଆକ୍ରମଣ ମଧ କଲେ । ରାୟଚିଆରି ର ନାୟକ ମହରୀଖାନ୍‌ରିନ୍ଦ ସେମାନଙ୍କ ସନ୍ଧାନରେ ଆସିଲେ । ଡ଼ାକୁ ମାନଙ୍କ ମଧରେ କୋହୁଆ ଭୟ ସୃଷ୍ଟି ହେଲା । ନାୟକ ମହିରଖାନ୍ ଏବେ ଘୋଡ଼ାର ଲଗାମକୁ ମଧ ଠିକ୍‌ଭାବରେ ଧରିପାରି ନଥିଲେ, ଆଖପାଖ ବୁଦାରୁ ଲୁଚିରହିଥିବା ଡ଼କାୟତମାନେ ଗୁଳି ବର୍ଷଣ ଆରମ୍ଭ କରିଦେଲେ । ଗୋଟିଏ ଗୁଳି ଘୋଡ଼ାର ଗୋଡ଼ରେ ବାଜିଲା, ସେ ଚମକି ପଡ଼ିଲେ, ଆରୋହୀ ପିଠିରୁ ଖସି ପଡ଼ିଲା ଏବଂ ଡ଼ାକୁମାନେ ତାଙ୍କୁ ଆଉ ଉଠିବାକୁ ଦେଲେ ନାହିଁ । ସେମାନେ ତାଉପରେ ଆକ୍ରମଣ କଲେ । ସେମାନେ ଖଣ୍ଡାରେ ହାତର ଅଙ୍ଗୁଳି ଏବଂ କାନ କାଟି ନେଇଗଲେ ଏବଂ ତାଙ୍କୁ ସେଠାରେ ଫିଙ୍ଗିଦେଲେ । ଗୁଳିର ଶବ୍ଦ ଶୁଣି କାରୋମୀରବହର ଯାହାକୁ ଆଗରୁ ଛୁଟରମୀର ବହୁତ ପିଟିଥିଲା, କିଛି ଆରବୀୟ ଏବଂ ଜମାନଶାହ ପଞ୍ଜାବୀ ବାହାରକୁ ବାହାରି ପଡ଼ିଲେ । ସେମାନେ ଶତ୍ରୁ ଉପରେ ଗୁଳି ବର୍ଷଣ କଲେ କିନ୍ତୁ ସେମାନେ ସେ ସ୍ଥାନରୁ ଅଦୃଶ୍ୟ ହୋଇଗଲେ । ସେମାନେ ଗୁଳି ତିଆରି କରିବା ମେସିନ୍ ଏବଂ ଅନେକ ଗୁଳି ସେଠି ଛାଡ଼ିଗଲେ । ଗୁରୁତର ଭାବେ ଆହତ

ମହରୀଖାଁଙ୍କୁ ଏବଂ ସେଇ ସାମାନଗୁଡ଼ିକୁ ନେଇ ସାଂଘଡ଼ ପୋଲିସ ଥାନାକୁ ନେଇଗଲେ ।

ଦ୍ୱିତୀୟଥର ପୁଣି ଏକ ବରିୟମର ପୁଲିସ ସେମାନଙ୍କ ହାତରେ ପଡ଼ିଗଲା । ସେ ଉମରକୋଟରୁ ବହୁ ପରିମାଣରେ ବାରୁଦ ଏବଂ ବନ୍ଧୁକ ନେଇ ସାଂଘଡ଼ ଯାଉଥିଲା । ଡ଼ାକୁମାନଙ୍କ ପାଇଁ ଏହା ଈଶ୍ୱରୀୟ ଉପହାର ଭଳି ଥିଲା । ସେମାନଙ୍କ ପାଖରେ ବାରୁଦ ଏବଂ ଅସ୍ତ୍ରଶସ୍ତ୍ର କମିଯାଇଥିଲା । ସେମାନେ ତାକୁ ଧରି ପକେଇଲେ । ଆଙ୍ଗୁଠି ସାହାଯ୍ୟରେ ତଣ୍ଟିଚିପି ତାକୁ ମାରିଦେଲେ ଏବଂ ଶବକୁ ଲୁଚାଇଦେଲେ ।

ଏହା ମଧ୍ୟରେ ଦୁଇତିନୋଟି ବଡ଼ ଡ଼କାୟତି କରିଥିଲେ - ଟୀରଥ ବଣିଆକୁ ଦୋଦନ ରାସ୍ତାରେ ଲୁଟ କଲେ । ବାଖରେ ଠାରେ ବଳପୂର୍ବକ ଲୁଟ୍‌ମାର କଲେ ଏବଂ ତୋଟିୟାରେ୍ାର ବ୍ୟବସାୟୀଙ୍କୁ ଲୁଟ୍‌କଲେ । ଏହା ମଧ୍ୟରେ ହିନ୍ଦୁ ବଣିଆମାନେ ପୋଲିସର ପହରା ବସାଇ ରଖିଥିଲେ । କିନ୍ତୁ ଡ଼ାକୁମାନେ ପୋଲିସ ପାଇଁ ଡ଼ରୁ ନଥିଲେ । ପୋଲିସ ସହିତ ସେମାନଙ୍କର ଘମାଘୋଟ ଯୁଦ୍ଧ ହେଲା । ସେମାନେ ବହୁଲୋକଙ୍କର କାନ ଓ ଓଠ କାଟି ଫିଙ୍ଗି ଦେଲେ, ବଣିଆ ମାନଙ୍କ ଉପରେ ବହୁପ୍ରକାର ଅତ୍ୟାଚାର କଲେ, ସେମାନଙ୍କ ସ୍ତ୍ରୀମାନଙ୍କୁ ମଧ୍ୟ ଛାଡ଼ିଲେ ନାହିଁ ଏବଂ ସେମାନଙ୍କର ଘର ଖାଲି କରିଚାଲିଗଲେ ।

ଏଠି ଗୋଟିଏ କଥା ମାନେ ରଖିବାକୁ ହେବ ଯେ, ଡ଼ାକୁମାନେ ସେମାନଙ୍କୁ ଲୁଣ୍ଠନ କରୁଥିଲେ, ଯେଉଁମାନେ ସେମାନଙ୍କୁ ଉସ୍‌କାଉଥିଲେ, ବା ଯେଉଁମାନେ ଗରିବଙ୍କ ପ୍ରତି ଅନ୍ୟାୟ କରୁଥିଲେ, ବିନା ପରିଶ୍ରମରେ ଧନ ସଂଗ୍ରହ କରି ଧନବାନ ବନିଥିଲେ । ଗରିବ ମାନଙ୍କୁ ସେମାନେ ହାତ ଲଗାଉ ନ ଥିଲେ । ଅନ୍ୟପକ୍ଷରେ ନିର୍ଦ୍ଧନୀ ଏବଂ ପଙ୍ଗୁ ଲୋକଙ୍କୁ ପାରୁପର୍ଯ୍ୟନ୍ତ ସାହାଯ୍ୟ କରୁଥିଲେ ।

ଆଉ ମଧ୍ୟ ନିଜର ଟେକ ରଖୁଥିଲେ । ଥରେ ଜଙ୍ଗଲରେ ଆଡ୍ଡା ଜମାଇ ଖୁସିମନଉ ଥିଲେ । କିଛି ଦୂରରେ ଏକ ରାଜରାସ୍ତା ଥିଲା । ଜଣେ ଚନ୍ତୀ ସେଇ ରାସ୍ତା ଦେଇ କପଡ଼ା ଗଣ୍ଠିଲିନେଇ ଯାଉଥିଲା । ପାଟିକରି ତାକୁ ପାଖକୁ ଡ଼ାକିଲେ । ବିଚରା ଚନ୍ତି ହାତିଯୋଡ଼ି ସେଠାରେ ପହଞ୍ଚିଲା । ଡ଼ାକୁମାନେ ପଚାରିଲେ- କୁଆଡ଼େ ଯାଉଛ ?

ଚନ୍ତୀ କହିଲା- ମାଲିକ୍, ସେଠ୍ ସଲାମତ୍ ଅଗ୍ରୀମ ଦେଇଥିଲା, ତେଣୁ ତାର କପଡ଼ା ଥାନ ପହଞ୍ଚାଇବାକୁ ଯାଉଛି ।

ଡ଼ାକୁ- ତାହେଲେ ?

ଚନ୍ତୀ- ତଥାପି ମଧ୍ୟ ଜିନିଷ ଆପଣଙ୍କର ଅଟେ । ଯଦି ଆପଣ ଏହା ନେବେ, ତେବେ ସେଠ୍‌କୁ ଅନ୍ୟ କପଡ଼ା ତିଆରି କରିଦେବି ।

ନାଁ-ନାଁ ଆମକୁ ତୁମର ଆଶିର୍ବାଦ ଦରକାର । ତଥାପି ତୁମେ ଗଣ୍ଠିଲି ଖୋଲି ଆମକୁ ଦେଖାଅ ତ ? ଚଞ୍ଚଳ ଚନ୍ତୀ କନା ଖୋଲି ଦେଖାଇଲା ।

ଡ଼ାକୁ- ଏବେ ସେହି ପୁରାଥାନଟି ତୁମେ ନିଜ ମୁଣ୍ଡରେ ବାନ୍ଧ ।

ଚନ୍ତୀ ଏଥର ଅବିଳମ୍ବେ ଆଜ୍ଞା ପାଳନ କଲା ।

ଡ଼ାକୁ- ଏବେ ତୁମେ ତୁମର ମାଲିକ ସଲାମତ ପାଖକୁ ଯାଅ ଏବଂ ଯାଇ କୁହ ଯେ, ଆମେ ତୁମକୁ ଏ ପଗଡ଼ି ବାନ୍ଧିଚୁ, ସାହସଥିଲେ ତା'କୁ ଖୋଲି ନେଉ । ଯେଉଁ ଉତ୍ତର ମିଳିବ, ତାହା ଆମକୁ ଆସି ଜଣାଇବ ।

ଚନ୍ତୀ ଏକ ପ୍ରକାର ଉଡ଼ିଲାପରି ମାଲିକ ପାଖରେ ପହଞ୍ଚିଲା । ମାଲିକ ଖବର ଶୁଣି କହିଲା, ମହାଶୟ, ତୁମର ବଡ଼ କୃପା ! ଏହି ଥାନ୍ ତୁମର ଏବଂ ପଇସା ବି ତୁମର । ଶିଘ୍ରଯାଇ ଏଇ ଖବର ସେମାନଙ୍କୁ ଦିଅ, ଢେରି କରନା, ଅନ୍ୟଥା ସେମାନେ ଯେପରି ରାଗୀ ନ ଯାନ୍ତି ।

ଚନ୍ତୀ ଫେରିଆସି ଡ଼ାକୁଙ୍କ ପାଖରେ ପହଞ୍ଚି ସବୁକଥା କହିଲା । ଡ଼ାକୁମାନେ ତା'ପରେ ତାକୁ ଗୋଟିଏ ଲୁଙ୍ଗି ପିନ୍ଧାଇ କହିଲେ, ଏବେ ଯାଇ ଆନନ୍ଦରେ ରହ, କିନ୍ତୁ ଆମର ସାହାଯ୍ୟ କେବେ ଭୁଲିବ ନାହିଁ ।

ଏହି ଚନ୍ତୀ ଏହାପରେ ସେମାନଙ୍କର ଘନିଷ୍ଠ ବନ୍ଧୁ ହୋଇ ଗଲା । ବହୁତ କିଛି ଖବର ସେ ସେମାନଙ୍କ ନିକଟକୁ ପହଞ୍ଚାଉଥିଲା । ସଲାମତ୍ ସହିତ ମଧ ତାର ପରିଚୟ ହୋଇଗଲା । ସମୟ ପଡ଼ିଲେ ସେମାନଙ୍କୁ ସାହାଯ୍ୟ କରୁଥିଲା ଏବଂ ସେମାନେ ମଧ ତା'ର ଉପକାର କରୁଥିଲେ ।

ଶେଷରେ ଲେଖାପଢ଼ା ଆରମ୍ଭ ହେଲା । ସରକାର ଦେଖିଲେ ଯେ ଦେଶୀ ସିପାହୀ କୌଣସି ବିଶେଷତ୍ୱ ଦେଖାଇଲେ ନାହିଁ; ତେଣୁ ଗୋରା ସିପାହୀଙ୍କୁ ଆଣି ସାଂଘଡ଼ରେ ଜମାକଲେ ।ସେମାନେ ଆସିବାମାତ୍ରେ ମକ୍ଷିକାର ଜଙ୍ଗଲରେ ନିଅାଁ ଲଗାଇଦେଲେ । ସେଇ ସମୟରେ ତ ଜଙ୍ଗଲ ସଫା ହୋଇଗଲା କିନ୍ତୁ ଅଧାଜଳା ଗଛରେ ଯେତେବେଳେ ବର୍ଷାପାଣି ପଡ଼ିଲା, ସେତେବେଳେ ଜଙ୍ଗଲ ନିଘଞ୍ଚ ହୋଇ ଉଠିଲା ।

ସେହି ସମୟରେ ମିଃଲ୍ୟୁକସ୍ ଜିଲ୍ଲାର ଡ଼େପୁଟୀ କମିଶନର ନିଯୁକ୍ତି ପାଇ ଆସିଲେ ଏବଂ ସର୍ଦ୍ଦାର ମୁହମ୍ମଦ ୟାକୁବ ନାରେର ଡ଼େପୁଟୀ କଲେକ୍ଟର ଥିଲେ । ପୁଣି ଏହି ଦୁଇ ସାହସୀ ଯୁବକ ଦିନରାତି ଏକ କରି, ଶୀତଖରା ସହି ଡ଼ାକୁ ମାନଙ୍କ ପଛରେ ଲାଗିଗଲେ । ଶେଷରେ ଅନେକ ଖୋଜାଖୋଜି ପରେ, ଅନେକ ବାଧାବିଘ୍ନର ସମ୍ମୁଖୀନ ହୋଇ ମକ୍ଷିକାର ବଖୋରେ ପାଖରେ ଡ଼ାକୁଙ୍କ ସହିତ ମୁହାଁମୁହିଁ ହୋଇଗଲେ । ଡ଼ାକୁମାନେ ପ୍ରଥମେ ସାହସ ହରାଇ ନଥିଲେ, ଗୁଳିବର୍ଷଣ ଆରମ୍ଭ କରିଦେଲେ, କିନ୍ତୁ ପଛଘୁଞ୍ଚା ଦେଲେ ।

କିନ୍ତୁ ଲ୍ୟୁକସ୍ ସାହେବ ସେମାନଙ୍କ ପିଛା ଛାଡ଼ି ନଥିଲେ । ଦ୍ୱିତୀୟଥର ତାହାଙ୍କୁ ସାହାବାଲେ ଦର୍ରେରେ ମାଡ଼ି ବସିଲେ । ବନ୍ଧୁକ ଚାଳନା ଆରମ୍ଭ ହୋଇଗଲା । ଯେତେବେଳେ ଡ଼ାକୁମାନେ ଦେଖିଲେଯେ, ଏବେ ଧରା ପଡ଼ିଯିବେ, ସେଠାରୁ ପଳାୟନ କଲେ ।

ଏହି ସମୟରେ ରୋହିଡ଼ୀର ପୀରବାବା ହାଇଦ୍ରାବାଦ ଠାରେ ଥିଲେ । ଲ୍ୟୁକସ ସାହେବ ପତ୍ର ବ୍ୟବହାର କରି ପୀରଙ୍କୁ ନଜରବନ୍ଦୀ କରି ରଖିଲେ । ତାଙ୍କର ବିଶ୍ୱାସ ଥିଲା, ଡ଼ାକୁମାନଙ୍କ ଉପରେ ପୀରଙ୍କର ଅଖଣ୍ଡ ପ୍ରଭାବ ଥିଲା ଏବଂ ଯଦି ସେ ତାଙ୍କୁ ବାଧ କରିବେ, ତେବେ ସେମାନେ ନିଜକୁ ନିଜେ ସମର୍ପଣ କରିଦେବେ ।

ପୀରଙ୍କ ଉପରେ ସମସ୍ୟା ଦେଖାଦେଲା, ତେଣୁ ସେ ପ୍ରତିଜ୍ଞାବଦ୍ଧ ହେଲେ ଯେ, ସମସ୍ତେ ଡ଼କାୟତଙ୍କୁ ସରକାରଙ୍କ ପାଖରେ ଜମା ଦେବେ ।

ପୀରଙ୍କ ଆଦେଶ ହେଲା ଯେ, ନିଜେ ନିଜକୁ ସରକାରଙ୍କ ଆଗରେ ସମର୍ପଣ କରିଦିଅ କିମ୍ବା ପୁରୁଷଭଳି ଲଢ଼ି ଜୀବନ ଦେଇଦିଅ । ତା'ପରେ ଜବାବ ମିଳିଲା; ଆଦେଶ ଶିରୋଧାର୍ଯ୍ୟ । ଲଢ଼େଇକରି ଜୀବନ ଦେବେ ।

ପୁଣି ପୀରୁ ମନ୍ତ୍ରୀ, ଚଗିୟୋଚାଙ୍ଗ ଏବଂ ଗୁଲୁମୋଟି ପ୍ରସ୍ତୁତ ହୋଇ ବାହାରକୁ ବାହାରିଲେ ଏବଂ ଜଙ୍ଗଲର ସୀମାରେ ପ୍ରସ୍ତୁତ ହୋଇ ଠିଆହେଲେ । ଲ୍ୟୁକସ୍‌କୁ ଖବର

ପଠାଗଲା, ଆସ ଆମେ ପ୍ରସ୍ତୁତ ଅଛୁଁ । ଏହାପରେ ଲ୍ୟୁକସ୍ ସାହେବ ସୈନ୍ୟଦଳ ନେଇ ଆସି ପହଞ୍ଚିଲେ । ଡ଼କାୟତମାନେ ଦୃଢ଼ ମୁକାବିଲା କଲେ । କିନ୍ତୁ ଏପାଖରେ ଅସଂଖ୍ୟ ସିପାହୀ ଆଉ ସେମାନେ ମିଶି ତିନି ସର୍ଦ୍ଦାର ବିଚରାମାନେ ମରାହେଲେ । ଲୋକେ କୁହାକୁହି ହେଲେ ଯେ ପୀରୁର ପେଟରେ ଗୁଳି ବାଜିଥିଲା, ତଥାପି ମଧ୍ୟ ଗୁରୁଣ୍ଡି ଗୁରୁଣ୍ଡି ଶେଷ ପର୍ଯ୍ୟନ୍ତ ଯୁଦ୍ଧ କରିଥିଲା । ଗୋଟିଏ ଗୁଳି ଯେତେବେଳେ ମସ୍ତିଷ୍କର ଏପାଖରୁ ସେ ପାଖ ହୋଇଗଲା, ସେତେବେଳେ ସେହି ବୀର ପୁଙ୍ଗବ ଥଣ୍ଡା ପଡ଼ିଗଲା । ଏହାପରେ ମଧ୍ୟ ତିନିଜଣ ଡ଼ାକୁ ବଲୁଗାହୋ, ମିସରୀଗାହୋ ଏବଂ ଉସ୍‌ମାନ ହିଙ୍ଗରୋଜ ଆଗକୁ ଆସିଲେ । ମକ୍ଷିକାରେ ଗୁଲାମ ମହମ୍ମଦ ଘାଟୀଠାରୁ କିଛି ଦୂରରେ ରହି ସେମାନେ କୁମକ ରକ୍ଷା କଲେ । ଲ୍ୟୁକସକୁ ପୁଣି ଖବର ପଠାଇଲେ, ଏବେ ସାହସ ଥିଲେ ଆସ ସାହେବ ବାହାଦୂର ଆସିଲେ ଏବଂ ଏକଶକ୍ତିଶାଳୀ ସଂଘର୍ଷ ଫଳରେ ତିନିଜଣଙ୍କର ମୃତ୍ୟୁ ହେଲା । ସେହି ସଂଘର୍ଷରେ ଡ଼ାକୁମାନେ କ୍ୱାଲାସିଂହର ପୁଅକୁ ହତ୍ୟାକଲେ ।

ଶେଷରେ ଏହି ଦଳର ଛ' ଜଣ ସରଦାର- ବାଚୁବାଦଶାହ, ଇସୋ, ଫଚଲୁ, ସୁମାର, ଖମୀସୋ ଏବଂ ରାଣା । ଯେତେବେଳେ ପୀର ସାହେବ ଡ଼ାକୁମାନଙ୍କୁ ପୋଲିସ ହାତରେ ଧରାଇଦେବାର ପ୍ରତିଜ୍ଞା କଲେ, ସେହି ସମୟରେ ଫଚଲୁ ଏବଂ ସୁମାର ପୀର ସାହେବଙ୍କ ଚାକରମାନଙ୍କୁ ଖତମ କରିଦେବାପାଇଁ ମନସ୍ଥ କରି ବାହାରିଲେ, ଯେହେତୁ ସେମାନେ ଧାରଣା କରି ନେଇଥିଲେ ଯେ, ଚାକର ମାନଙ୍କ ବୁଦ୍ଧିରେ ପଡ଼ି ପୀର ପୋଲିସ ପାଖରେ ପ୍ରତିଜ୍ଞା କରିଥିଲେ କିନ୍ତୁ ଚାକରମାନଙ୍କୁ ଖତମ କରିବା ପୂର୍ବରୁ ସେମାନେ ନିଜେ ମୃତ୍ୟୁବରଣକଲେ ଏବଂ ରାଣା ସେହି ସମୟରେ ଯାଇ ଲ୍ୟୁକସ୍ ପାଖରେ ଶରଣାପନ୍ନ ହେଲା ଓ ତା'କୁ ସାତବର୍ଷ ପାଇଁ କଳାପାଣି ଦଣ୍ଡ ମିଳିଲା ।

ବାକି ରହିଲେ ତିନିଜଣ- ବଚୁ, ଇସୋ ଏବଂ ଖମୋସୀ । ଏମାନଙ୍କ ମଧ୍ୟରୁ ଖମୋସୀ ଅର୍ନ୍ତଦ୍ଧାନ ହୋଇଗଲା । ଇସୋର ଧୈର୍ଯ୍ୟ ଭାଙ୍ଗିଗଲା ଏବଂ ସେ ସରକାର ବାହାଦୂରଙ୍କ ଆଗରେ ଆତ୍ମସମର୍ପଣ କରିବାକୁ ପସନ୍ଦ କଲା । ସେଠାରୁ ତାକୁ ଲ୍ୟୁକସ୍ ସାହେବଙ୍କ ପାଖକୁ ପଠାଗଲା । କିନ୍ତୁ ବଚୁ ବାଦଶାହ ବେପରବାୟ ଭାବେ ପ୍ରତିଶୋଧ ନେବାର ବ୍ୟସ୍ତ ରହିଲା । କୌଣସି ପ୍ରକାରେ ପୋଲିସ ତାକୁ ପାଇ ପାରିଲା ନାହିଁ ।

ଶେଷରେ ଶେଷ ଅସ୍ତ୍ର ପ୍ରୟୋଗ କରାଗଲା । ହେଲା ଏପରି ଯେ, ସେ ବଚୁର ପ୍ରିୟତମାକୁ ହିଁ ବନ୍ଦୀ କରିନେଲା ଏବଂ ସମ୍ବାଦପତ୍ରରେ ଅତିରଞ୍ଜିତ ଖବର ଛପାଇ ପ୍ରଚାର କରିଦେଲା ଯେ, ଅମୁକ ସ୍ଥାନରେ ଅମୁକ ସ୍ତ୍ରୀ ଲୋକକୁ ସର୍ବସାଧାରଣରେ ନିଲାମ କରାଯିବ ।

ବଚୁ ତ ମନମଧ୍ୟରୁ କେବେ ହାର ମାନି ନ ଥିଲା କିନ୍ତୁ ଏଇ ଖବରଟି ତାକୁ ଭୀଷଣ ଭାବେ ବିଚଳିତ କରିଦେଲା । ସେ ସାହସ ହରାଇ ବସିଲା । ସେ ମଧ୍ୟ ବଚୁ ପ୍ରତି ଜୀବନ ଦେଉଥିଲା ଏବଂ ଏକ ବିଶ୍ୱାସୀ ସ୍ତ୍ରୀ ଥିଲା ।

ବାସ୍, ବଚୁବାଦଶାହ ଅନୁଭବ କଲା ଯେ, ଦଳ ଭାଙ୍ଗିଯାଇଛି, ଭାଗ୍ୟ ବି ଓଲଟି ଯାଇଛି, ଏଣୁ ଏକ ପ୍ରକାର ଧାଇଁଲା ପରି ସରଦାର ମୁହମ୍ମଦ ୟାକୁବ ପାଖରେ ପହଞ୍ଚିଲା । ନିଲାମ ଅନ୍ୟଦିନ ହେବାର ଥିଲା । ସରଦାର ବଚୁକୁ ଦେଖିବା ମାତ୍ରକେ ଚିହ୍ନିଗଲା । ତାକୁ ଜଣାଗଲା ବଚୁ କୌଣସି ଭୟଙ୍କର ଇଚ୍ଛା ନେଇ ଆସିଛି, ତେଣୁ ସେ ଅନ୍ୟ କୋଠରୀକୁ ପଶିଗଲା ଏବଂ ଦୂରରୁ ପାଟିକରି କହିଲା - କିଏ ତୁମେ ? କ'ଣ ଚାହୁଁଛ ?

ସେ ଉତ୍ତର ଦେଲା - ମୁଁ ବଟୁ, ମୁ ତୁମ ପାଖରେ ଶରଣ ଯାଉଛି । ମୋର ପ୍ରେୟସୀକୁ ମୁକ୍ତି କରିଦିଅ ।

ତା'ପରେ ସମସ୍ତ ଶରୀରକୁ ତଲାସୀ କରି ତାକୁ ଗିରଫ କରି ନିଆଗଲା । ଇସୋ ସହିତ ତାହାକୁ ମୀରପୁରଖାସକୁ ପଠାଇ ଦିଆଗଲା । ସେଠାରେ ସ୍ୱତନ୍ତ୍ର ବିଚାରପତି ହାର୍ଟଡ୍ରେଭିଡ୍‌ଙ୍କ ଅଦାଲତରେ ମୋକଦ୍ଦମା ଚାଲିଲା ଏବଂ ତାକୁ ମୃତ୍ୟୁଦଣ୍ଡ ଆଦେଶ ଶୁଣାଇ ଦିଆଗଲା । ଫାଶୀ ଦେବା ପୂର୍ବରୁ ତାର ପ୍ରେମିକା ସହିତ ଥରେ ଦେଖା କରିବାର ଅନୁମତି ଦିଆଗଲା ।

ଦୁଇ ଅନନ୍ୟ ପ୍ରେମୀ ନିଜ ନିଜ ପ୍ରଗାଢ଼ ସ୍ନେହରେ ଆବଦ୍ଧ ହୋଇଗଲେ । କିଛି ସମୟ ପରସ୍ପର ମୂକ ଓ ଶବ୍ଦହୀନ ଭାବରେ ଏକତ୍ର ହୋଇଗଲେ, ଶେଷରେ ବଟୁ କହିଲା, ପ୍ରେୟସୀ, ବାସ, ଶେଷ ବିଦାୟ ଦିଅ ।

ପ୍ରେମିକା ମଧ୍ୟ ପୋଷାକ ମଧ୍ୟରେ ଥିବା କଟୁରୀ ବାହାର କରିନେଲା - ହେ ମୋର ପ୍ରିୟତମ, ତୁମ ବିନା ଏ ଜଗତରେ ବଞ୍ଚିବା ଅସମ୍ଭବ । ନିଅ ଏହି କଟୁରୀ ।

ପ୍ରଥମେ ଏହି ଶକ୍ତ ହୃଦୟ କମ୍ପି ଉଠିଲା । ହାତ ଥରି ଉଠିଲା । ମୋର ମୃତ୍ୟୁପରେ ଆଉ କୌଣସି ପୁରୁଷ ସହିତ ସେ ଯଦି ଘର ସଂସାର କରେ । କଟୁରୀ ବାହାର କରି ତା'ର ମୁଣ୍ଡ କାଟି ପକାଇଲା ।

ସରକାରଙ୍କ ସ୍ୱୀକୃତି ମିଳିବାପରେ ବଟୁ ଏବଂ ଇସୋକୁ ସାଂଘଡ଼ରେ ହିଁ ଫାଶୀ ଦିଆଗଲା ଏବଂ ଦୁହିଁଙ୍କ ଶବକୁ ବଜାରରେ ଥିବା ପୋଲିସ ଫାଣ୍ଡି ଆଗରେ ପୋତି ଦିଆଗଲା ଏବଂ ସଡ଼କ ଉପରେ ସଡ଼କ ତିଆରି କରି ଦିଆଗଲା । ଫଳରେ ରାସ୍ତା ଉପରେ ଯାଉଥିବା ଲୋକ ସବୁବେଳେ ତାଙ୍କୁ ପଦଦଳିତ କରିବେ ।

ଲୋକେ କହନ୍ତି - ଇଂରେଜ ଯଦି ବଟୁକୁ କ୍ଷମାଦେଇ କୌଣସି ଚାକିରୀରେ ଲଗାଇଥାନ୍ତା, ତା'ହେଲେ ସେ ବହୁତ ଉପଯୋଗୀ ସିଦ୍ଧ ହୋଇଥାନ୍ତା । କେବଳ ସିନ୍ଧରେ ନୁହେଁ, ପୁରା ଭାରତବର୍ଷରୁ ଚୋରୀ ଓ ଡକାୟତିର ମୂଳପୋଛ ହୋଇଯାଇଥାନ୍ତା ।

ଏବେତ ପ୍ରତ୍ୟେକ ଗଛର ଡ଼ାଳ ବଟୁ ହୋଇଯାଇଛି ।

କେତେଦୂର ପର୍ଯ୍ୟନ୍ତ ଏ କଥା ସତ ଏବଂ ଯଦି ସତ ହୁଏ କେତେଦୂର ପର୍ଯ୍ୟନ୍ତ ଲୋକଙ୍କ କଥାନୁସାରେ ପ୍ରତ୍ୟେକ ଗଛର ଡ଼ାଳ ବଟୁ ହୋଇ ଯାଇଛି, ଏଥିପାଇଁ ସମ୍ବାଦପତ୍ରର ପ୍ରତିଲିପି ହିଁ ସାକ୍ଷୀଦେବ, ମୁଁ କାହିଁକି ବ୍ୟର୍ଥଭାବରେ କାଗଜଗୁଡ଼ାକୁ କଳାକରୁଥିବି ।

ବାସ୍, ପ୍ରଖ୍ୟାତ ଡ଼ାକୁ ଏପରି ଭାବରେ ଦୁନିଆଁ ଛାଡ଼ି ଚାଲିଗଲେଣି । ସେମାନଙ୍କ ସନ୍ତାନପ୍ରତି ଏବେ କଡ଼ା ନଜର ରଖାଯାଇଛି । ସକାଳ ଆଠଘଣ୍ଟାରେ ଏବଂ ସନ୍ଧ୍ୟା ଆଠଘଣ୍ଟାରେ ପ୍ରତିଦିନ ହାଜିରା ହେବାକୁ ପଡ଼େ । ତାଙ୍କୁ ତାଙ୍କ ନିଜ ବାସସ୍ଥାନ ଅଢ଼େଇକୋଶ ପର୍ଯ୍ୟନ୍ତ ସୀମା ମଧ୍ୟରେ ଯିବା ଆସିବା ଅନୁମତି ଅଛି ନଚେତ୍ ବିଶେଷ ଆବେଦନ କରିବାକୁ ପଡ଼ିଥାଏ । ସେମାନଙ୍କ ପିଲାଙ୍କପାଇଁ ସରକାର ସେଠାରେ ମଦ୍ରାସା (ବିଦ୍ୟାଳୟ) ଖୋଲିଛନ୍ତି ଏବଂ ସେମାନଙ୍କ ସ୍ତ୍ରୀଲୋକଙ୍କ ପାଇଁ ଗୃହକର୍ମ ଶିକ୍ଷାଦେବା ପାଇଁ ବ୍ୟବସ୍ଥା କରିଛନ୍ତି । ଅଧିକାଂଶ ଲୋକଙ୍କ ଉପରୁ ଏବେ କଟକଣା ଉଠାଇ ଦିଆଯାଇଛି ଏବଂ ଏବେ ସେମାନେ କାମଧନ୍ଦାରେ ମଧ୍ୟ ଯୋଗ ଦେଲେଣି ବାକି ଲୋକମଧ୍ୟ ଧୀରେ ଧୀରେ ମୁକ୍ତ ହେଉଛନ୍ତି ।

*ଭାଷାନ୍ତର : ଦୟାନିଧି ଆଚାର୍ଯ୍ୟ*



ସଂତ ସିଂହ ସେଖୋଁ ଙ୍କ ଜନ୍ମ ବର୍ତ୍ତମାନ ପାକିସ୍ଥାନର ଅନ୍ତର୍ଗତ କେ ନଂ ୭୦, ଜିଲ୍ଲା ଲାୟଲପୁରରେ । ବହୁ ଘାତ ପ୍ରତିଘାତ ଭିତରେ ବିଭିନ୍ନ ସ୍ଥାନରେ ଅଧ୍ୟାପନା କାର୍ଯ୍ୟ କରିଥିଲେ । ମାର୍କ୍ସବାଦୀ ଦୃଷ୍ଟିକୋଣ ଯୋଗୁଁ ସେ ଅଧ୍ୟାପନା କାର୍ଯ୍ୟରେ ଆଗକୁ ବଢ଼ି ପାରି ନଥିଲେ । ସାହିତ୍ୟିକ ଜୀବନ ପ୍ରାରମ୍ଭରେ ସେଖୋଁଙ୍କ ବହୁ ଇଂରାଜୀ କବିତା ଓ ଗଳ୍ପ ଲଣ୍ଡନର ବହୁ ପତ୍ର ପତ୍ରିକାରେ ପ୍ରକାଶିତ । ଶ୍ରୀ ସେଖୋଁ ପଞ୍ଜାବୀର ଜଣେ ପ୍ରମୁଖ ଗାଳ୍ପିକ, କବି, ନାଟ୍ୟକାର, ଔପନ୍ୟାସିକ ଓ ନିବନ୍ଧ ଲେଖକ । ୧୯୩୫ ମସିହାରେ ରଚିତ ଓ ୧୯୩୬ ମସିହାରେ ପ୍ରକାଶିତ ତାଙ୍କର ପ୍ରଥମ ଗଳ୍ପ 'ଭତ୍ତା' ପଞ୍ଜାବୀ ଭାଷାର ପ୍ରଥମ କ୍ଷୁଦ୍ରଗଳ୍ପ ।

# ଭତ୍ତା

ବୋଧହୁଏ ନାମୋ ରାତିରେ ଅନେକ ସମୟ ପର୍ଯ୍ୟନ୍ତ କଷ୍ଟେଇ ପାଇଁ ପୋଷାକ କଥା ଚିନ୍ତା କରିଛି । ପଶ୍ଚିମର ଥଣ୍ଡା ବାୟୁ ( ଶୀତଳ ପବନ) କାରଣରୁ ବା ଅନ୍ୟ କୌଣସି କାରଣରୁ ପରଦିନ ସେ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ବିଛଣା ଛାଡ଼ି ନାହିଁ । ତା'ର ମାଁର ସ୍ୱଭାବ ସେଇଆ, ସେ ପାଟି ତୁଣ୍ଡରେ ଛାଟଟା ଫଟେଇବା ଆରମ୍ଭ କରିଦେଇଥିଲା ।

ଆରେ ଏ ରାଆଣ୍ଡି ! ବର୍ତ୍ତମାନ ତୁ କ'ଣ ଆଉ ଗଛ ପରି ବଢ଼ିବୁ । ବାରବର୍ଷର ଏତେବଡ଼ ହେଲୁଣି ଆଉ ଏ ଯାଏଁ ଶୋଇଛୁ । ମୁଁ ମଧ ଉଠେଇ ନଥାନ୍ତି, ଆଜି ତୋର ରୋଟି ନେଇକି ଯିବାର ଅଛି । ଯେତେବେଳେ ଇଚ୍ଛା ନେଇ ଯା । ସେଠି ତୋ ବାପା ହିଁ ତୋତେ ଠିକ୍‌କରିବ ।

ଯଦି ନାମୋ ଅସୁସ୍ଥ ବି ଥିବ ତେବେ ମଧ ତା' ମାଁର ଏପରି ନ ଉଠେଇବା ସତ୍ତ୍ୱେ ସେ ଉଠିପଡ଼େ । ସେଥିପାଇଁ ସେ ସଙ୍ଗେ ସଙ୍ଗେ ବିଛଣା ଆଉ ଚାଦର ସାଉଁଟେଇ କାନ୍ଧରେ ଧରି ଚଳକୁ ଆସିଲା । ଗ୍ଲାସେ ପାଣିରେ ମୁହଁ ହାତ ଧୋଇ ନିଜର ଦହିରୋଟି ଜଳଖିଆ ବାହାର କରି ଖାଇବାରେ ଲାଗିଲା । ସେ ପଟେ ମାଁ ମଧ ତାକୁ ନ ଉଠେଇବା ପଣ ପୁରା କରିଛି ଏବଂ ନାମୋର କ୍ରୋଧ ତା ପତି ଓ ଭାଇ ଉପରେ ପକେଇଛି । ପଡ଼ିଶା ଘରୁ ପିତୋର ମାଁ ମଧ ଡ଼ାକିଛି : ନାମୋ, ଆଲୋ ଝିଅ ଆମ ପିତୋକୁ ମଧ ରୋଟି ଦେବାପାଇଁ ସାଙ୍ଗରେ ନେଇଯିବୁ ।

ନାମୋ ଶୀଘ୍ର ହିଁ ଶୁଣି ସାରି ହଁ ମାରି ସେ ପଟେ ଦେଖିଲା । ମାଁ ରୋଟି, ଦହି ଓ ପିଆଜ ଲୁଗାରେ ବାନ୍ଧି ଲସ୍‌ସି ମାଠିଆରେ ରଖି ଦେଇଥିଲା । ନାମୋ ତାକୁ ଧରି ଚୁପ୍‌ଚାପ୍ ଘର ଭିତରୁ ବାହରି ପଡ଼ିଲା । ରାସ୍ତାରେ ପିତୋକୁ ମଧ ଡ଼ାକିନେଲା । ଉଭୟେ ସାଥି ହୋଇ କ୍ଷେତକୁ ରୋଟି ଦେବାକୁ ଚାଲିଗଲେ ।

ସେପଟେ ହରନାମ ସିଂହ ହଳ ଅଟକେଇ ଗାଁ ଆଡ଼କୁ ଚାହିଁ ରହିଛି । ତାର ଡ଼ର ମଧ ରହିଛି ଯେ ସାଥିରେ କାମ କରୁଥିବା ତା' ବାପା ଯେମିତି ନ ଜାଣନ୍ତୁ କି ପଛପଟ ହଳ ଛିଡ଼ା ହୋଇଯାଇଛି । ହରନାମ ସିଂହ ଥକି ପଡ଼ିଛି ଅପେକ୍ଷାରେ । ସେହି ସମୟରେ କ୍ଷଣିକ ମଧରେ ହିଁ ଆଖୁବାଡ଼ି ପଛପଟରୁ ଲୟା ଲୟା ପାଦ ପକାଇ ଚଞ୍ଚଳ ଗତିରେ ଘିଅ ରଙ୍ଗ ଘାଗରା ଓ ମୁଣ୍ଡରେ ଗୋଲାପି ଓଢ଼ଣୀ ପିନ୍ଧି ବଧୁଟିଏ ଭତ୍ତା ଧରି (ନେଇ) ଆସୁଥିବାର ଜଣାପଡ଼ିଛି ।

- ସେଇ ମୋ ରୋଟି ଆସୁଛି - ମନ ଖୁସିରେ ସେ କହେ । ଏଇଟା କେବଳ ଭତ୍ତା (ବ୍ୟୟଖର୍ଚ୍ଚ) ନୁହେଁ ବରଂ ସକାଳେ ହଳ ଚଳେଇବା କାରଣରୁ ଉଠି ପଡ଼ିବା ହେତୁ, ମିଳି ନ ଥିବା ପ୍ରେମର ଅନ୍ତିମ ଭାଗ ସୁଧ ସହିତ ସାଙ୍ଗରେ ନେଇ ଆସୁଛି । ଆଖିରେ ଏକ ମର୍ମର ସୃଷ୍ଟିହୋଇ କଟୀ ଓ ନିତମ୍ବ ଦେଇ ଜଘନ ପର୍ଯ୍ୟନ୍ତ ସଂଚରି ଯାଇ

ଊର୍ଦ୍ଧ୍ୱଗାମୀ ହୋଇଯାଏ । ହୃଦୟ ପୁଲକିତ ହୋଇଯାଏ । ହଳଚାଳକ ସେଇଠୁ ମୁହଁ ମୋଡ଼ି ବଳଦକୁ ପାଞ୍ଚଣରେ ମାରି ଚିହାର କରେ । ଲଙ୍ଗଳଗାର ଶୀଘ୍ର ହୋଇଯାଏ, ଫେରିଆସିବା ପରେ ପୁଣି ସେହି ଅବସ୍ଥା । ଆଉ ଗୋଟିଏ ଲଙ୍ଗଳ ଗାରକରି ସେଇ ସ୍ଥାନକୁ ଫେରିଆସିଲେ, ପୁଣି ସେହି ଘିଅରଙ୍ଗର ଘାଘରା ଓ ଗୋଲାପି ଓଢ଼ଣୀ ପରିହିତା ସୁନ୍ଦରୀର ରଶ୍ମୀ ଦୃଷ୍ଟି ପଥାରୁଢ଼ ହୁଏ । ଦୃଷ୍ଟି ବିଜୁଳୀଠାରୁ ତୀବ୍ରଗତିରେ ସେଠି ପହଞ୍ଚେ ଏବଂ କାଳବିଳମ୍ବ ନ କରି ସୁନ୍ଦରୀର ଓଢ଼ଣାର ଅପସାରିତ କରିନିଏ ।

ଆରେ, ଏ ତ ବଟେର ବହୁ ଅଟେ । ହୃଦୟ ମାଟି ଭିତରେ ଧସେଇ ହୋଇ ରହିଯାଏ । ପୁଣିସେଇ ପୁରୁଣା ଗତି । ଶରୀରର ଫୁର୍ତ୍ତି ଉଭେଇଯାଏ । ପାଞ୍ଚ ଛଅ ଧାର ଲଙ୍ଗଳଗାର ପକାଇ ସାରିବାପରେ  ନିରୀହ ଉତ୍କଣ୍ଠିତ ଆଖିକୁ ପୁଣି ସେହି ଆଖୁଖେତର ବସ୍ତି  ପଟକୁ ଯିବାର ଆଜ୍ଞାଦିଏ । ବଳଦ ଧିରେ ଚାଲିବାରେ ଲାଗନ୍ତି । କିଛିକ୍ଷଣ ଦେଖିବାପରେ ନିରାଶ ହୋଇ ଦୃଷ୍ଟି ଏବଂ ହୃଦୟକୁ ଫେରାଇ ଆଣି ରାଗରେ ବଳଦକୁ ପାଞ୍ଚଣରେ ପାହାର ଦିଏ । ଚିହାର କରିବା ବଦଳରେ ଏକ ଧୀର ଶ୍ୱାସ ବାହାରି ପଡ଼େ । ହୃଦୟକୁ ଶାନ୍ତ କରି ଆଉ ଦୁଇ ତିନି ଧାର ଲଙ୍ଗଳଗାର ପକାଇ ଆଖୁ କିଆରୀ ସେପଟ ବସ୍ତିକୁ ଦୃଷ୍ଟି ପକାଇ ନିଶ୍ଚିନ୍ତ ହେଲାଯେ ତାର ଆକାଂକ୍ଷା ନିଶ୍ଚୟ ପୂରଣ ହେବ । କିଛି ସମୟ ପରେ ଆଖିକୁ  ଏପଟ ସେପଟ ବୁଲେଇ ନେଇଛି, ଆଖୁ କିଆରୀର ଗଳି ପଟରୁ କ୍ଷଣକ ମଧ୍ୟରେ ଏକ ଉଜ୍ଜ୍ୱଳମୟ, କ୍ଷୀଣାଙ୍ଗୀ ଦୃଷ୍ଟିଗୋଚର ହେଲା । କିନ୍ତୁ ତାର ଘାଗରା ଫିକା ଘିଅ ହଳଦୀ ରଙ୍ଗର ନଥାଇ କୌଣସି ଅନ୍ୟ ରଙ୍ଗର ଅଛି । (ସେ ପତ୍ନୀର ନିତ୍ୟ ଘାଗରା ଘିଅ ରଙ୍ଗର ଏବଂ ଗୋଲାପୀ ରଙ୍ଗର ଓଢ଼ଣୀକୁ ହିଁ ଜାଣେ) କାଳେ ଘାଗରା ବଦଳି ଯାଇଥିବ, କିନ୍ତୁ ଆଶାର ସୂତ୍ର ଛିଣ୍ଡି ଯାଇଛି, ଯେତେବେଳେ ଦୁଇଜଣ କଣ୍ଢେଇ ପରିକା ଝିଅ ସାଥୀ ହୋଇ, ତା'ପଛ ପଟୁ ଆସିବା ଦୃଷ୍ଟିଗୋଚର ହୋଇଛି ।

ଏତ ନାମୋ ଅଟେ । ଗୋଟିଏ ଝାମ୍ପରେ ରୁଚି ଖାଇବାର ଉପଦେଶ ହିଁ ଦୂରକରି ଦେଇଛି । ମାଁ କାମର ଲହସରେ ଆସିବାକୁ ଦେଲାନାହିଁ, ନାମୋକୁ ପଠେଇ ଦେଇଛି ।

କଣ କରିଥାନ୍ତା ? ବଳଦକୁ ଥରେ ପ୍ରହାର କଲା, ଯାହା ତା'ହାଡ଼ରେ ଲାଗିଲା । ସେ କିଛି ଢ଼େଇଁ ପଡ଼ିଲା ଏବଂ ଲଙ୍ଗଳଗାର ବକ୍ର ହୋଇଗଲା -ଗର୍ତ୍ତ ହୋଇଥାଉ କହି ଲଙ୍ଗଳଗାରର ପଛକୁ ଚାଲିଗଲା ।

ଆଠ ଦଶଟା ଲଙ୍ଗଳଗାର ହୋଇଯାଇଛି । ହୃଦୟର ଇଚ୍ଛା ପୂର୍ଣ୍ଣ ନ ହେଲା ବୋଲି ପେଟ କାହିଁକି ଖାଲି ରହିବ ? ବିଚରା ପୁଣି ରାସ୍ତାକୁ ଦେଖିଲା । ଘାଗରା ବାଲୀତ ପାଖ ଖେତ ଦେଇ ଚାଲିଗଲା । ନାମୋ ଏବଂ ପିଟୋ ପହଞ୍ଚିଗଲେ ।

ଭାଇ, ରୋଟି ଖାଇପକା, ନାମୋ ମିଠାଗଳାରେ କହିଲା ।

ଖାଇନେବି, ଏହି ଲଙ୍ଗଳ ବାହାର କରି ନିଏଁ, ହରନାମ ସିଂହ ଆଦ୍ର ଗଳାରେ ଉତ୍ତର ଦେଲା ।

ମୂଳ ଲଙ୍ଗଳଗାର ଆସିଗଲା ଏବଂ ବାପପୁଅ ହଳଛାଡ଼ି ରୋଟି ଖାଇବାକୁ ବସି ପଡ଼ିଲେ । ହରନାମ ସିଂହକୁ ହାତ ଧୋଇବା ମଧ୍ୟ ମନେ ପଡ଼ିଲା ନାହିଁ । ବାପ ମଧ୍ୟ ଜାଣିଛି ଯେ, ବୋହୁ ନ ଆସିବାରୁ ପିଲାଟା କିଛି ନିସ୍ତେଜ ପଡ଼ିଯାଇଛି ।

ଝିଅ ନାମୋ, ତୋ'ଭାଉଜକୁ ରୋଟି ଦେଇ ପଠା । ତୁ ବହୁତ କମ୍ ଲସସୀ ଆଣୁ ! ବଡ଼ ମାଠିଆ ଉଠେଇ ପାରୁନୁ, ଏ ଲସସୀ ତ ଆମେ ବର୍ତ୍ତମାନ ପିଇଦେବୁ ।

ନାଁ ବାପା । ଭାଉଜ ଆଜି ଗହମ ଗୁଣ୍ଡ କରୁଥିଲେ । ଅଟା ଶେଷ ହୋଇଯାଇଥିଲା, ତେଣୁ ଆସି ପାରିଲେ ନାହିଁ ।

ଗହମ ! ଗହମ ଆମେ କଳରେ ଗୁଣ୍ଡ କରିଦେବୁ । ତୋ 'ମାଁ'କୁ କହିବୁ, ଦାନା ଶୁଖାଇ ରଖିଥିବ । ଆମେ ଆଜି ଗହମ ଗୁଣ୍ଡ କରିଦେବୁ । ହରନାମ ସିଂହ, ଆଜି ହୁଏତ ହଳ ଶୀଘ୍ର ଛାଡ଼ିଦେବା, ଗହମ ଗୁଣ୍ଡ କରେଇବାକୁ ହେବ ।

ହରନାମ ସିଂହକୁ ଆଜି ତା' ବାପା, ସବୁଦିନ ଅପେକ୍ଷା ଭଲ ଲାଗିଲା । ସେଦିନ ମଧ୍ୟ ଭଲ ଲାଗିଥିଲା, ଯେଉଁଦିନ ତାର ବାହା ଥିଲା ଏବଂ ବାପା କନା ପାଇଁ ତିରିଶ ଟଙ୍କା ଦେଇଥିଲେ । କିନ୍ତୁ ସେ 'ଆଚ୍ଛା' କହି ଚୁପ୍ ରହି ଯାଇଥିଲା । ତା'ହୃଦୟରେ କିଛି କଣ୍ଟା ପଡ଼ିଲା ପରି ଲାଗିଥିଲା, ଯେତେବେଳେ ମାଁ ବିରୁଦ୍ଧରେ କେତେ ଅକୁହାକଥାର ଗଣ୍ଠି ଖୋଲିବାରେ ଲାଗିଥିଲା । ବାପା, ଆପଣ ରୋଟି ଖାଇ ନିଅନ୍ତୁ । ଆମେ ଆଗକୁ ଯାଇ ପିଚୋର ରୋଟି ଦେଇ ଆସିବୁ । ନାମୋ କିଛି ସମୟ ପରେ ପରେ କହିଲା ।

ନାମୋର ବାପାଙ୍କୁ ପିଚୋ ବହୁତ ଭଲ ଲାଗୁଥିଲା- ପିଚୋ ତୋ'ଭାଉଜ ରୋଟି ନେଇ ଯାଏ ନାହିଁ ? ସେ ପିଚୋକୁ ସ୍ନେହରେ ପଚାରିଲେ ।

ପିଚୋ ଜାଣି ନଥିଲା ଯେ, ଭାଉଜ ରୋଟି ଦେବାପାଇଁ କାହିଁକି କ୍ଷେତକୁ ଆସେ ନାହିଁ । ତା'ର ଭାଇ କଲେଜରେ ପଢୁଥିଲା ଏବଂ ବାପା ହିଁ ମଜଦୁର ମାନଙ୍କ ହଳ କରୁଥିଲେ । ତାହାର ରୋଟି ମାଁ ନେଇ ଯାଉଥିଲେ କିମ୍ବା ଯେଉଁ ଦିନ ବାପ ହଳ ଚଳାଇବା ପାଇଁ ଯାଉ ନଥିଲେ, ସେ ନେଇ ଯାଉଥିଲା । ବେଳେ ବେଳେ ପିଚୋର ପାଳି ମଧ୍ୟ ଆସି ଯାଉଥିଲା । ନାମୋର ବାପାକୁ ଜଣାଥିଲା ଯେ, ଯଦି ପିଲା ହଳବାହକ ହେବ ନାହିଁ, ବୋହୁ ରୋଟି ନେଇ ଯାଏ ନାହିଁ । କିନ୍ତୁ ଏହି ପ୍ରଶ୍ନଟି କେବଳ ପିଚୋ ସହିତ କଥାବାର୍ତ୍ତା ବଜାୟ ରଖିବା ପାଇଁ ହିଁ କରିଥିଲା ।

ଜଣାନାହିଁ, କାକା - ପିଚୋ ଆଗଠାରୁ ମଧ୍ୟ ଅତି ମିଠାଗଳାରେ ଉତ୍ତର ଦେଲା, ବାପ ପୁଅ ଦୁହେଁ ଈଷତ ହସିଲେ, କିନ୍ତୁ ନାମୋ ଏବଂ ପିଚୋ ଉଭୟଙ୍କୁ, ଅନ୍ତର୍ମନର କଥା ଜଣା ନଥିଲା ।

ପିଚୋ, ତୋ'ଭାଉଜ ପଢ଼ୁଆର ବୋହୁ ଅଟେ, ସେ ରୋଟି ନେଇ ଯାଏ ନାହିଁ ।

ନାଁ, ମୋ ମାଁ କେବେ ତାକୁ କହି ନାହିଁ । ପିଚୋ ତା'ଭାଉଜ ପକ୍ଷ ନେଇ କହିଲା, କିନ୍ତୁ ପୁଣି କାକାର ବୁଦ୍ଧି ସାମନାରେ ନିଜ ବୁଦ୍ଧିକୁ ନିମ୍ନ କରି କହିଲା, ଜଣା ନାହିଁ, ଏପରି ହିଁ ହୋଇଥିବ ।

ବାପପୁଅ ଦୁହେଁ ହସି ଦେଲେ, ତାସାଙ୍ଗେ ନାମୋ ଏବଂ ପିଚୋ ମଧ ହସିବାକୁ ଲାଗିଲେ । ହରନାମସିଂହ ଆଦି ତ ରୋଟି ଖାଇ ଚାଲିଲେ ଏବଂ ନାମୋ ଓ ପିଚୋ, ପିଚୋର କ୍ଷେତ ପଟକୁ ଚାଲିଗଲେ ।

ଅଳ୍ପଦୂର ଗଲାପରେ ପିଚୋ ନାମୋକୁ ପଚାରିଲା - ଆରେ ତୋ'ଭାଉଜ ରୋଟି ନେଇ କାହିଁକି ଆସନ୍ତି ନାହିଁ ?

ନାମୋକୁ ମଧ ଜଣା ନଥିଲା, କିନ୍ତୁ ସେ ଏକ ଉପାୟ ଚିନ୍ତା କଲା - ପିଚୋ, କାଲି ତୁ ତୋ ଭାଉଜ ସାଙ୍ଗରେ ରୋଟି ଦେବାପାଇଁ ଆସିବୁ । ମୁଁ ମଧ ମୋ'ଭାଉଜ ସାଥୀରେ ଆସିବି । ଯଦି ତୋର ଭାଉଜ ନ ଆସିବେ, ତେବେ ତୁ ପଚାରିବୁ ସେ କାହିଁକି ଆସୁ ନାହାନ୍ତି ।

ଠିକ୍ ଅଛି, ପିଚୋକୁ ମଧ କଥାଟା ମନକୁ ପାଇଲା । କିନ୍ତୁ ପୁଣି କହିଲା, ତୋ ମାଁ ତୁମ ଦୁହିଙ୍କୁ ଆସିବାକୁ ଦିଏ ନାହିଁ । କହିବ ଜଣେ ମାତ୍ର ଯାଅ । ନାମୋକୁ ମଧ ଏହି ପ୍ରକାର ଅନୁଭବ ହେଲା ଏବଂ ସେ ଆଉକିଛି ବାର୍ତ୍ତାଳାପ କଲାନାହିଁ ।

ପିଚୋର କ୍ଷେତରେ ପିଚୋର ବାପା ଓ ଦୁଇଜଣ ଶ୍ରମିକ ହଳ କରୁଥିଲେ । ପିଚୋକୁ ଦେଖି ସମସ୍ତେ ଖୁସି ହୋଇଗଲେ ।

ଆଜି ପିଚୋ ରୋଟି ନେଇ ଆସିଛି ? ଜଣେ କହିଲା, ଥକି ଯାଇନି ତ ? ଅନ୍ୟଜଣେ ପାଖରୁ କହିଲା । ନାମୋକୁ ଅନୁଭବ ହେଲାଯେ ପିଚୋକୁ ସମସ୍ତେ ଭଲ ପାଆନ୍ତି,। କିନ୍ତୁ ତା'ପ୍ରତି କେହି ଚିନ୍ତା କରନ୍ତି ନାହିଁ ।

ପିଚୋ ଶ୍ରମିକମାନଙ୍କ ତୋଷାମଦ ଏବଂ ନାମୋର ଉଦାସ ଭାବ କାହାକୁ ବି ଧ୍ୟାନ ଦେଲା ନାହିଁ । କ୍ଷଣିକ ମଧରେ ସେମାନଙ୍କୁ ରୋଟି ହସ୍ତାନ୍ତର କରି ପ୍ରତ୍ୟାବର୍ତ୍ତନ କଲା । ଖାଇବାପାତ୍ର ବାପା ନେଇ ଆସିବ ।

ଆରେ,କାଲି ମଧ ରୋଟି ଦେବାକୁ ତୁ ଆସିବୁ ? ନାମୋ ପିଚୋକୁ ପଚାରିଲା ?

ଆରେ ଭଉଣୀ ,ମୁ ତ ଆଜି ଥକି ପଡିଲିଣି । ପିଚୋ କ୍ଳାନ୍ତିପୂର୍ଣ୍ଣ ନିଶ୍ୱାସ ମାରି କହିଲା,କେଉଁଠି ବସି ଟିକିଏ ଥକା ମେଣ୍ଟାଇବା ।

ସେଇ ଶିରୀଶ ଗଛର ଛାଇରେ ବସିବା । ନାମୋ କ୍ଷେତ ଶେଷର ଶୀରିଶ ବୃକ୍ଷକୁ ଦେଖି କହିଲା ଯେତେବେଳେ ସେମାନେ ଶିରୀଶଗଛ ମୂଳକୁ ପହଞ୍ଚିଲେ, ପିଚୋ କ୍ଳାନ୍ତିପୂର୍ଣ୍ଣ ନିଶ୍ୱାସ ମାରି କହିଲା, କେଉଁଠି ବସି ଟିକିଏ ଥକା ମେଣ୍ଟାଇବା ।

ପିଚୋ, ତୁ ତ ଖୁବ ଶିଘ୍ର ଥକିଗଲୁ । ନାମୋ କହିଲା- ଏତେ ଶିଘ୍ର ଥକି ପଡୁଛୁ ? ମୁଁ ତ ଆଉ କୋଶେ ବାଟ ଚାଲିଲେ ମଧ ଥକିବି ନାହିଁ । ଏ ପର୍ଯ୍ୟନ୍ତ କୋଶେରୁ ଅଧିକ ଚାଲି ସାରିଛି, କିନ୍ତୁ ନାମୋର କୋଶର ଅର୍ଥ ଥକେଇ ଦେଲା ଭଳି ରାସ୍ତା ଥିଲା ।

ଭଉଣୀ, ମୁଁ ଥକି ଗଲି । ମୋର ତ ଯେମିତି ମୁଣ୍ଡ ବୁଲୋଉଛି, ପିଚୋ ମୁଣ୍ଡକୁ ଚାପି କହିଲା ।

ପିଚୋ ଏବେ ଭାଉଜ ଫୁଲ ତିଆରି କରିବେ । ମାଁ କହେ ଯେ, ତୁ ତା'ର ଚାଦର ଆଣି କାଟିଦେବୁ । କେବେ ଘରେ କାଟିବା ପାଇଁ ବସି ପଢ଼ିବା ତ କେବେ ଆମ ଘରେ । ନାମୋ ଯେପରି ପିଚୋକୁ ପ୍ରାର୍ଥନା କଲା ।

ଭଉଣୀ, ତୁମ ଘରେ ତୋ' ମାଁକୁ ଡ଼ର ଲାଗେ । ଆମ ଘରକୁ ଚାଲି ଆସିବୁ । ପିଟୋ ସାମାନ୍ୟ ଗର୍ବର ସହି ଉତ୍ତର ଦେଲା । ଠିକ୍ ଅଛି କେବେ କେବେ ଆମ ଘରେ ମଧ୍ୟ କାଟିବା । ବେଳେବେଳେ ମୋ ମାଁ କିଛି କହେନାହିଁ, ନାମୋ ହାରିଲା ଭଳି କହିଲା ।

ନାମୋ, ତୋର ଭାଉଜ କିପରି ? ପିଟୋ ନିଜର ବଡ଼ିମା କରିବା ଇଚ୍ଛାରେ ପଚାରିଲା, ତୋ'ସହିତ ଭଲ ବ୍ୟବହାର କରନ୍ତି ?

ଭଲ ହିଁ ଅଟନ୍ତି, ନାମୋ ଉତ୍ତର ଦେଲା । ନାମୋ ଭାଉଜ ପକ୍ଷରୁ ନିରାଶ ହୋଇ ନଥିଲା । ବର୍ତ୍ତମାନ ତ ଭଲ ଅଛନ୍ତି, କାଲି କଣ ହେବ ଜଣାନାହିଁ ।

ମୋ ଭାଉଜ ତ ଭାରି ଭଲ, ପିଟୋ ପୁଣି ବଡ଼ିମା କରି କହିଲା । ଗୋଟେ ଫୁଲ ଡ଼ିଜାଇନ୍ ଚାଦର ପୁରା କରି ମଧ୍ୟ କହନ୍ତି, ବିବି, ମାଁ ଘରୁ ମୁଁ ବାହା ଓଢ଼ଣୀ କାଢ଼ି ଆଣିବି ।

ତତେ ତ ବାହା ଓଢ଼ଣୀ ଦରକାର ହେଉଛି, ନାମୋ ପାଇଁ କଥା ସଜାଇବା ସୁବିଧା ମିଳିଗଲା! । ତୋର ତ ଏବେ ପରଘରକୁ ଯିବାର ଇଚ୍ଛା ହେଉଛି ।

କେଉଁଠାରୁ କେଉଁ ଆଡ଼କୁ ନେଉଯାଉଛୁ କଥାକୁ, ପିଟୋ ଲାଜେଇ ଯାଇ ଉତ୍ତର ଦେଲା ।

ଆଛା, ଉଠ୍ ତେବେ, ଯିବା ଖରା ବଢୁଛି । କହି ନାମୋ ଗୋଡ଼ ଉଠାଇ ଯିବାପାଇଁ ଛିଡ଼ା ହୋଇଗଲା,

ଆରେ, ଆମେ ସେ ବୁଢ଼ୀକୁ ସାଙ୍ଗରେ ନେଇଯିବା । ଦୁଇ ପାହୁଣ୍ଡ ଚାଲି ପିଟୋ ଆସୁଥିବା ବୁଢ଼ୀକୁ ସଂକେତ କଲା । ଏକୁଟିଆ ଗଲେ ସଡ଼କରେ ଡ଼ର ମାଡ଼ିବ ।

ରାସ୍ତାରେ ଏକ ନିଛାଟିଆ ଗଳି ଥିଲା । ଯେଉଁଠି ଗାଁର ଛୋଟ ପିଲାମାନେ ବହୁତ ଭୟ କରୁଥିଲେ, କାରଣ ସେପଟରୁ ଜଙ୍ଗଲୀ, ଆଉ ଶ୍ରମଜୀବୀମାନେ ଯାଉଥିଲେ ।

ନାମୋ ଠାରେ କିଛି ସାହସ ଥିଲା- ଆରେ, ଡ଼ର କାହାପାଇଁ ? ସେ କହିଲା, ତୋତେ କେହି ଧରିବେ ନାହିଁ ।

ଏଇ ପ୍ରକାରର କଥା କହନାହିଁ, ପିଟୋ ମାଙ୍କଡ଼ ପରି ମୁହଁ କରି କହିଲା, ଭାଉଜର ଗାଁ ପାଖରେ ଗୋଟିଏ ଗାଁ ଅଛି । ସେଠି ନିଜପରିକା ଏକ ଝିଅକୁ ବଦ୍‌ମାସ୍ ମାନେ ଉଠେଇ ନେଇଗଲେ

ଏଇ କଥା ଶୁଣି ନାମୋ ପଛରେ ଆସୁଥିବା ସେଇ ବୁଢ଼ୀକୁ ନିଜ ସାଥିରେ ନେବାପାଇଁ ରାଜି ହୋଇଗଲା, କିଛି ସମୟପରେ ବୁଢ଼ୀ ତାଙ୍କ ପାଖରେ ଥିଲା ।

ଆମ୍ମା, ଆମକୁ ସଡ଼କ ଡ଼ର ଲାଗୁଥିଲା । ଆମେ କହିଲୁ, ଆମ୍ମା ସାଙ୍ଗରେ ଯିବୁ । ନାମୋ ଅମ୍ମାକୁ ଖୁସି କରିବାପାଇଁ କହିଲା ।

ଆରେ, ତୁମକୁ କିଏ ଉଠେଇ ନେଇଥାନ୍ତା ! ପରୀ ମାନଙ୍କୁ ସଡ଼କରୁ ବୁଢ଼ୀ କ୍ଷୁର୍ଣ୍ଣ ହୋଇ କହିଲା ।

ଓଃ, ହାୟ, ଆରେ ଆମ୍ମା, ପିଟୋର ମୁହଁରୁ ବାହାରି ପଡ଼ିଲା ।

ଚାଲ ଝିଅ ଚାଲ ! ସେ ଶିଘ୍ର କହିଁଲେଇ କହିଲା ॥

*ଭାଷାନ୍ତର : ବି.ଏନ୍.ଶ୍ରୀକାନ୍ତ ପଟ୍ଟନାୟକ*



ଜ୍ଞାନପୀଠ ପୁରସ୍କାର ବିଜେତା ମାସ୍ତି ଭେଙ୍କଟେଶ ଆୟଙ୍ଗାର 'ଶ୍ରୀନିବାସ'ଙ୍କ ଜନ୍ମ ୧୮୯୧ ମସିହା ଜୁନ ୬ ତାରିଖରେ । ୧୯୫୬ରେ ମହିଶୁର ବିଶ୍ୱବିଦ୍ୟାଳୟ ଦ୍ୱାରା ସେ ଡ଼କ୍ଟର ଅଫ ଲ' ଉପାଧିରେ ଭୂଷିତ । କାହାଣୀ ସହିତ ନାଟକ, ଏକାଙ୍କି, ଉପନ୍ୟାସ, କବିତା ଓ ସମାଲୋଚନା କ୍ଷେତ୍ରରେ ମଧ ତାଙ୍କ ସିଦ୍ଧି ଶ୍ରୀ ମାସ୍ତିଜୀଙ୍କ ବହୁମୁଖୀ ପ୍ରତିଭାର ପରିଚୟ ଦିଏ । ତାଙ୍କଦ୍ୱାରା ରଚିତ 'ରଙ୍ଗପ୍ପନ୍ମ ମଦୁଏ' (ରଙ୍ଗପ୍ପାର ବାହାଘର) ଶୀର୍ଷକ ଗଳ୍ପ କନ୍ନଡ ସାହିତ୍ୟର ପ୍ରଥମ ମୌଳିକ କାହାଣୀ ଭାବରେ ସ୍ୱୀକୃତ ।

# ରଂଗପ୍ପାର ବାହା

ଆପଣଙ୍କ ଭିତରୁ କିଏ କେମିତି ପଚାରି ପାରନ୍ତି 'ରଂଗପ୍ପାର ବାହା' ଶିରୋନାମା ବଦଳରେ 'ରଂଗନାଥର ବାହାଘର' କିମ୍ବା ରଂଗନାଥ ବିଜୟ' ରଖିଲେ ନାହିଁ କାହିଁକି ? ଠିକ୍ କଥା - 'ଜଗନ୍ନାଥ ବିଜୟ', 'ଗିରିଜା କଲ୍ୟାଣ' ଭଳି ମୁଁ ମଧ୍ୟ ଶିରୋନାମା କୁ 'ଶ୍ରୀ ରଂଗନାଥ ବିଜୟ' ରଖିପାରିଥାଆନ୍ତି, ଏ କଥା ମୋତେ ବେଶ୍ ଭଲ ଭାବରେ ଜଣା । କିନ୍ତୁ ଦେଖନ୍ତୁ ବିଷୟଟି ନାଁଚ 'ଜଗନ୍ନାଥ ବିଜୟ' ନାଁ ଗିରିଜା କଲ୍ୟାଣ । ଏହା ଆମ ନିଜଗାଁର ରଂଗପ୍ପା ର ବାହାଘର କଥା, ତେଣୁ ସେଭଳି କିଛି ଶିରୋନାମା ଦେଇ ନାହିଁ ।

ମୋ ଗାଁ ର ନାଁ ହେଉଛି ହୋସ୍‌ହଲ୍ଲି । ଆପଣ ନାଁ ଟା ଶୁଣିଛନ୍ତି ନିଶ୍ଚୟ ? ନା'...ଓ, ଏଥିରେ ଆପଣଙ୍କ ଦୋଷ ନାହିଁ । ଭୂଗୋଳ ପୃଷ୍ଠାରେ ଏହାର ନାଁ' ହିଁ ନାହିଁ । ଇଂଲଣ୍ଡରେ ବସି, ଇଂରାଜୀରେ ଭୂଗୋଳ ଲେଖୁଥିବା ହାକିମ ବୋଧେ ହୋସହଲ୍ଲି ନାଁ ଟା ଜାଣି ନଥିବେ । ଆମ ନିଜ ଲୋକମାନେ ମଧ୍ୟ ଏ ଭଳି ଗାଁ କୁ ଉଲ୍ଲେଖ କରିବା ଭୁଲି ଯାଉଛନ୍ତି । ଠିକ୍, ମେଣ୍ଢାଦଳ ଭଳି । ଯଦି, ଇଂଲଣ୍ଡର ସାହେବ ଆଉ ଆମ ନିଜ ଲେଖନକାର ଭୁଲି ଯାଉଛନ୍ତି, ତେବେ ନକ୍ସାକାର ର କି ଗରଜ ପଡ଼ିଛି ଯେ ନକ୍ସାରେ ଦେଖାଇବ । ତେଣୁ ପୁରା ମାନଚିତ୍ରରେ ଆମ ଗାଁର ଚିହ୍ନବର୍ଣ୍ଣ ମଧ୍ୟ ନାହିଁ ।

ଦେଖିଲେ ! କେଉଁଠ ଆରମ୍ଭ କରି କ'ଣ ସବୁ କହି ଯାଉଛି । କ୍ଷମା କରିବେ । ଭାରତବର୍ଷରେ ମୈସୁର, ଯେମିତି ଖାଇବାପାଇଁ ବଢ଼ାଯାଉଥିବା ଭୋଜନ ମଧ୍ୟରେ ପୁରନ୍‌ପୋଲି ଆଉ ହୋସହଲ୍ଲି ମୈସୁର ରୂପକ ପୁରନପୋଲିରେ ମସଲା ପୁର । ଉଭୟଟିର ସତ୍ୟତାରେ ସଂଦେହ ନାହିଁ । ଆପଣ ହଜାର କଥା କହିପାରନ୍ତି ମୋର ଜମା ଆପତ୍ତି ନାହିଁ । କିନ୍ତୁ ମୁଁ ସତ ହିଁ କହିଛି । ହୋସହଲ୍ଲିର ପ୍ରଶଂସା କେବଳ ମୁଁ କରୁନାହିଁ - ଗାଁରେ ଜଣେ ବୈଦ୍ୟ ଅଛନ୍ତି ସେ ମଧ୍ୟ ଏଇ କଥା କହନ୍ତି । ସେତ କେତେ ଗାଁ ଦେଖିଛନ୍ତି । କିନ୍ତୁ ଇଂଲାଣ୍ଡ ଫେରନ୍ତା ମାନଙ୍କ ପରି ସେ ନୁହନ୍ତି । ଆଜିକାଲିର ଯୁବକ ଯଦି ତାଂକୁ ପଚାରେ - ଆପଣ ଇଂଲାଣ୍ଡ ଯିବେ ? ତେବେ ସେ ଉତ୍ତର ଦିଅନ୍ତି - ନା ଭାଇ ସେ କାମ ତମ ପାଇଁ ରଖିଦେଇଛି । ଯେଉଁଠି ରହିଛୁଁ ତାକୁ ଛାଡ଼ି ଉକୁଣି ଲଗା କୁକୁର ପରି ବୁଲିବା ତମକୁ ସାଜିବ । ମୁଁ କେବଳ ଅଳ୍ପ କେତୋଟି ବସ୍ତି ଦେଖିଛି । କିନ୍ତୁ ପ୍ରକୃତରେ ସେ ଅସଂଖ୍ୟ ଜାଗା ଦେଖି ସାରିଛନ୍ତି ।

ଆମ ଗାଁରେ ଯେଉଁ ଗଛ ବୃକ୍ଷ ଅଛି ସେଥିରେ ଅନେକ ଆମ୍ବଗଛ ମଧ୍ୟ ଅଛି । ଆପଣ ଆମ ଗାଁକୁ ଆସନ୍ତୁ, ଆମ୍ବକଷିଟିଏ ଦେବି । ଖାଇବେ ? ନା! ନା! ଖାଇବା ଦରକାର ନାହିଁ, ତାକୁ କେବଳ କାଟନ୍ତୁ । ଖଟାଳିଆଭାବ ତାଳୁଯାଏଁ ଚହଟି ଯିବ । ଥରେ ମୁଁ ଆମ୍ବକଷିଟିଏ ଘରକୁ ଆଣିଥିଲି । ଚଟଣି କରାଗଲା । ସମସ୍ତେ ଖାଇଲେ । ଯିବେ କୁଆଡ଼େ ଧଇଲା ସମସ୍ତଙ୍କୁ କାଶ । ଔଷଧ ପାଇଁ ବୈଦ୍ୟଙ୍କ ପାଖକୁ ଦୌଡ଼ିଲି । ସେତେବେଳେ ସେ ଏଇ କଥାଟି ମତେ କହିଥିଲେ ।

ଆମ ଗାଁର କଷି ଆମ୍ବ ଯେମିତି ଶ୍ରେଷ୍ଠ, ସେଭଳି ତା' ଆଖ ପାଖର ସବୁ ଜିନିଷ ଶ୍ରେଷ୍ଠ । ଆମ ଗାଁ ପୋଖରୀର ପାଣି ବହୁତ ଭଲ । ତା ମଧ୍ୟରେ ପଦ୍ମନାଡ଼ ବଣ । ଫୁଲ ଦେଖିବାକୁ ଅତି ସୁନ୍ଦର । ଖାଇବାପାଇଁ ଖଲି ନାହିଁ ତ ଆମେ ସ୍ନାନ ସାରି ଫେରିବାବେଳେ ଦୁଇଟି ପଦ୍ମପତ୍ର ନେଇ ଆସୁଁ । ଆପଣ ଭାବୁଥିବେ ଏ ସବୁ ମୁଁ କ'ଣ କହିଯାଉଛି । କିନ୍ତୁ ସତରେ ଆମ ଗାଁର କଥା ହିଁ ଏମିତି । ସେ ଯାହାହେଉ, ଆପଣଙ୍କ ଭିତରୁ, କାହାରିକୁ ଏଇ ସବୁ ଦେଖିବାର ଇଚ୍ଛା ଥାଏ ତେବେ ମୋ ପାଖକୁ ଚିଠିଟିଏ ଲେଖିଦେବେ । ମୁଁ ହୋସହଲ୍ଲିର ପୁରା ବିବରଣୀ ପ୍ରଦାନ କରିଚି । ଆପଣ ନିଶ୍ଚୟ ଆସିବେ ।

ମୁଁ ଦଶବର୍ଷ ତଳର କଥାଟିଏ କହୁଛି । ସେତେବେଳେ ଇଂରାଜୀ ଜାଣିଥିବା ଲୋକଙ୍କ ସଂଖ୍ୟା ଅଧିକ ନଥିଲା । ସବା ଆଗ କର୍ଣ୍ଣିକା ଜୀ ସାହାସ କରି ନିଜ ପୁଅକୁ ବେଙ୍ଗଲୋର ପଠାଇଥିଲେ । ଏବେତ ଅନେକ ଅଛନ୍ତି । ଏବେ ଛୁଟି ଦିନ ମାନଙ୍କରେ ସାଇର ପିଲା ଇଂରାଜୀରେ କଥାବାର୍ତ୍ତା କରୁଛନ୍ତି । ସେତେବେଳେ ଆମ ଏଠି ଏଇ ଭାଷା ନଥିଲା । ...........କନ୍ନଡ଼ ଭିତରେ ଇଂରାଜୀ ମିଶି ନଥିଲା । ମଜା କଥାଟିଏ କହୁଛି । ମାତ୍ର ଚାରିଦିନ ତଳର କଥା । ରାମାରାଓ ଘର କାଠ ବିଡ଼ାଟିଏ କିଣିଲେ । ତାଙ୍କ ବଡ଼ପୁଅ ଆଗକୁ ଆସି କାଠବାଲିକୁ ପଚାରିଲା - 'ଚଟେ କେତେ ଦେବି' ? ସେ କହିଲା - 'ଚାରି ପଇସା' ଏବେ ଚେଞ୍ଜ ନାହିଁ କାଲିକି ଆ, କହି ସେ ଭିତରକୁ ଚାଲିଲା । ବିଚାରୀ କିଛି ବୁଝି ପାରିଲା ନି । କିଛି ବେଳ ଠିଆ ହୋଇ ରହିଲା, ତା ପରେ ଚାଲିଗଲା । ମୁଁ ସେଇଠି ଠିଆ ହୋଇଥିଲି । ମୁଁ ବି ବୁଝିପାରିଲିନି । ଯେତେବେଳେ ରଂଗପ୍ପାକୁ ପଚାରିଲି : କହିଲା ଚେଞ୍ଜ ମାନେ ଖୁଚୁରା ।

ଏଭଳି ଅମୂଲ୍ୟ ଇଂରାଜୀ ଆମ ଗାଁରେ ପ୍ରଚଳିତ ହୋଇ ନଥିଲା । ସେଥିପାଇଁ ଯେତେବେଳେ ରଂଗପ୍ପା ବେଙ୍ଗଲୋର ରୁ ଫେରିଲା, ଗାଁରେ କୁହା କୁହି ହେଲେ - ଶୁଣିଲଣି କର୍ଣ୍ଣିକାଜୀଙ୍କ ପୁଅ ଆସିଛି । .........ଆରେ ଯେଉଁ ଟୋକା ବେଙ୍ଗଲୋର ପଢ଼ିବାକୁ ଯାଇଥିଲା ନା, ସେ ଫେରିଛି, ଚାଲ ଦେଖି ଆସିବା । ବାସ୍ ଗାଁ ସାରା ତାଙ୍କ ଘର ଆଡ଼କୁ ଦଉଡ଼ିଲେ । ମୁଁ ଦାଣ୍ଡ ପଟେ ଠିଆ ହୋଇଥିଲି । ଭିଡ଼ ଦେଖି ପଚାରିଲି - ସମସ୍ତେ କାହିଁକି ଏମିତି ଆସୁଛନ୍ତି ? ଏଠି କ'ଣ ମାଙ୍କଡ଼ ନାଚ ହେଉଛି ? ଭିଡ଼ ଭିତରେ ଥିବା ଏକ ନିର୍ବୋଧ ବାଳକ ସମସ୍ତଙ୍କ ସାମ୍ନାରେ ମତେ ପଚାରିଲା ତୁ କାହିଁକି ଆସିଲୁ ? ଏକଦମ ଉଦ୍ଧତ ପିଲାଟା, ମାନ ମର୍ଯ୍ୟାଦା ଜାଣି ନଥିବା ଟୋକା । ମୁଁ ଏୟା ଭାବି ଚୁପ ରହିଲି ଯେ, ହୁଏତ ପୂର୍ବର ଶିଷ୍ଟାଚାର ଏବେ ଲୋପ ପାଇ ଗଲାଣି ।

ଏତେ ଲୋକଙ୍କୁ ଦେଖିବା ପରେ ମଧ ରଂଗପ୍ପା ହସି ହସି ପଦାକୁ ଆସିଲା । ଆମେ ସମସ୍ତେ ତାଙ୍କ ଘର ଭିତରକୁ ଯାଇଥିଲେ, ଘରଟି କଲିକତାର ଗଧ ଗୁହାଳ ପାଲଟି ଯାଇଥାନ୍ତା । ଭଗବାନଙ୍କ ଦୟାରୁ ସେମିତି କିଛି ହେଲା ନାହିଁ । ରଂଗପ୍ପା ବାହାରକୁ ଆସିବା ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ଛଅମାସ ପୂର୍ବେ ଯେମିତି ଯାଇଥିଲା ଠିକ ସେମିତି ଅଛି । ଜଣେ ବୁଢ଼ୀ ତା ପାଖରେ ଠିଆ ହୋଇଥିଲା । ବୁଢ଼ୀଟି ରଂଗପ୍ପା ଛାତିରେ ହାତ ବୁଲାଇ ଦେଖି କହିଲା - ପଇତା ଏବେବି ଅଛି । ଯାହାହେଉ ଜାତି ଧର୍ମରେ

ଦାଗ ଲାଗିନି । ଆଉ ସେ ଚାଲିଗଲା । ରଂଗପ୍ପା କେବଳ ହସି ଦେଲା ।

ରଂଗପ୍ପାର ହାତ-ଗୋଡ଼, କାନ-ନାକ, ଆଖି ପୂର୍ବପରି ଥିବା ଦେଖି ପାଟିଭିତରେ ମିଳେଇ ଯାଉଥିବା ମିଶ୍ରି ଖଣ୍ଡ ପରି ଭିଡ଼ ଭାଙ୍ଗିଗଲା । ମୁଁ ଠିଆ ହୋଇ ରହିଲି । ସମସ୍ତେ ଗଲାପରେ ପଚାରିଲି, କ'ଣ ରଂଗପ୍ପା, କେମିତି ଅଛୁ ? ରଂଗପ୍ପା ସେତେବେଳେ ଯାଇଁ ମତେ ଦେଖିଲା । ପାଖକୁ ଆସି ନମସ୍କାର ହୋଇ କହିଲା, ଆପଣଙ୍କ ଆଶିର୍ବାଦରେ ଏ ପର୍ଯ୍ୟନ୍ତ ଭଲ ଅଛି ।

ରଂଗପ୍ପାର ଏଇଟା ଏକ ଭଲଗୁଣ । ସେ ଜାଣିଥିଲା, କାହା ସହିତ କେତେ କଥାବାର୍ତ୍ତା ଲାଭଦାୟକ ହେବ । ମଣିଷର ମୂଲ୍ୟ ସେ ଠିକ୍ ଠଉରାଇ ପାରୁଥିଲା । ଆଜିକାର ଟୋକାଙ୍କ ପରି ସୂର୍ଯ୍ୟକୁ ଦେଖିଲାପରି ଉପରକୁ ମୁହଁକରି ଅଣ୍ଟାଭାଙ୍ଗି, ଅଥବା ହାତକୁ ବେଚ ହଲାଇଲାପରି ନମସ୍କାର କଲାନାହିଁ । ସେ ତ ନଇଁପଡ଼ି, ପାଦଛୁଇଁ ନମସ୍କାର କଲା । ମୁଁ ତାକୁ 'ଶିଘ୍ରମେବ ବିବାହ ମସ୍ତୁ' ଆଶିର୍ବାଦ ଦେଲି ଆଉ ଦୁଇ ଚାରିପଦ କଥାବାର୍ତ୍ତା ହେବାପରେ ଘରକୁ ଫେରି ଆସିଲି ।

ଉପରବେଳା ଖାଇ ସାରିବା ପରେ ଗଡ଼ିଥିଲି । ଦୁଇଟି 'କମଳା' ଧରି ରଂଗପ୍ପା ମୋ ଘରକୁ ଆସିଲା । ଖୁବ୍ ଉପକାରୀ, ଉଦାର ସ୍ୱଭାବର ପିଲା । ମୁଁ ଭାବିଲି ତାକୁ ବାହା କରାଇ ଦେଲେ ଜଣେ ଯୋଗ୍ୟ ଗୃହସ୍ଥ ହୋଇ ପାରନ୍ତା । ଦଶ ଜଣଙ୍କ ଉପକାର କରି ପାରନ୍ତା । କିଛି ବେଳ ଏଣୁ ତେଣୁ କଥା ହେବାପରେ ମୁଁ ପଚାରିଲି - ରଂଗପ୍ପା କେବେ ବାହା ହେଉଛୁ ।

ରଂଗପ୍ପା କହିଲା - 'ମୁଁ ବାହା ହେବି ନାହିଁ' ।

'କାହିଁକି କିରେ' ?

ମୋତେ ଯୋଗ୍ୟ କନିଆଁ ମିଳିଲେ ତ । ମୋର ଜଣେ ହାକିମ ଅଛନ୍ତି ଛଅମାସ ଆଗେ ତାଙ୍କ ବିବାହ ହୋଇଛି । ବୟସ ପାଖାପାଖି ତିରିଶ ବର୍ଷ ଆଉ ତାଙ୍କ ସ୍ତ୍ରୀ କୁ ପଚିଶ । ପରସ୍ପର ପ୍ରେମାଳାପ କରନ୍ତି । ମନେ କରନ୍ତୁ ମୁଁ ଜଣେ ଛୋଟ ଝିଅକୁ ବାହା ହେବି, ହୁଏତ ସେ ମୋର ପ୍ରେମର କଥାକୁ ଗାଳି ମନେ କରିବ । ବେଙ୍ଗଲୋର ର ଏକ ନାଟକ କଂପାନୀ ଶକୁନ୍ତଳା ନାଟକ ମଞ୍ଚସ୍ଥ କଲେ । ସେଥିରେ ଶକୁନ୍ତଳା ଅତି ଛୋଟ ହୋଇଥିଲେ ଦୁଷ୍ମନ୍ତକୁ କିପରି ପ୍ରେମ କରିଥାଆନ୍ତା । କାଳିଦାସଙ୍କ ନାଟକର ଅଭିରୁଚି କ'ଣ ହୁଅନ୍ତା ? ବିବାହ କରିବ  ବିବାହଯୋଗ୍ୟ ଝିଅ ସହିତ  କରିବା ଉଚିତ ନହେଲେ ବରଂ ନାହିଁ । ତେଣୁ ଏବେ ବିବାହ କରିବି ନାହିଁ ।

- ଆଉ କିଛି କାରଣ ?

- ନିଜ ପସନ୍ଦରେ ବିବାହ କରିବି । ଯେଉଁ ଝିଅମାନେ ଦାନ୍ତରେ ନଖ କାମୁଡ଼ି ଜାଣନ୍ତି ନାହିଁ ଠିଆ କରେଇ ଦେଲେ, ତାକୁ ସାମ୍ନା ଲୋକ କେମିତି ବା ପସନ୍ଦ କରିବ ।

- ଜଣେ ନିମ ଆଉ ଅନ୍ୟଟି କଲରା ।

ରଂଗପ୍ପା ହସି ହସି କହିଲା ଏକ୍‌ଜେକ୍ଟ୍‌ଲି ! ଠିକ୍ ସେୟା ।

ମୁଁ ତ ଭାବିଥିଲି ଯେ ଜଣେ ପକ୍କା ଗୃହସ୍ଥ ହେବ, କିନ୍ତୁ ଯେ ତ ବ୍ରହ୍ମଚାରୀ ହେବାର ବିଚାର

କରୁଛି । ମୋ ମନ କିଛି ବିଚଳିତ ହୋଇଗଲା । କିଛିବେଳ କଥାବାର୍ତ୍ତା ପରେ ତାକୁ ବିଦା କଲି । ମୁଁ ସେଇଠୁ ପଣ କଲି ଏଇ ଟୋକାକୁ ବିବାହ କରେଇଲେ ଯାଇ ଛାଡ଼ିବି ।

ଆମ ରାମାରାଓ ଘରକୁ ତାର ବଡ଼ଭଉଣୀର ଝିଅ ଆସିଛି । ଏଗାର ବର୍ଷର ଭାରି ସୁନ୍ଦର । ବଡ଼ ସହରରେ ରହୁଚି । ବୀଣା ଆଉ ହାରମୋନିୟମ୍ ବଜାଏ । ଗଳାଟା ଅତି ମଧୁର । ତାର ବାପାମାଁଙ୍କ ଦେହାନ୍ତ ହୋଇଯାଇଛି - ତେଣୁ ମାମୁଁ ନିଜ ଘରକୁ ନେଇ ଆସିଛନ୍ତି । ରଂଗପ୍ପା ତା ପାଇଁ ଯୋଗ୍ୟ ବର ଓ ସେ ରଂଗପ୍ପା ପାଇଁ ଯୋଗ୍ୟ ବୋହୂ ।

ମୁଁ ରାମାରାଓ ଘରକୁ ଯିବା ଆସିବା କରେଁ ତେଣୁ ଝିଅ ଟି ମୋ ସହିତ ଖୋଲା ଖୋଲି କଥାବାର୍ତ୍ତା କରୁଥିଲା । ଆରେ ଝିଅଟିର ନାଁଟା କହିବା ଏକବାର ପାଶୋରି ଦେଇଛି । ତା ନାଁ ରତ୍ନା । ପରଦିନ ସକାଳୁ ରାମାରାଓ ଘରକୁ ଗଲି । ତା ପତ୍ନୀଙ୍କ ସହ ଦେଖାହେଲା । କହିଲି, ଦହି ଦେବି ରତ୍ନାକୁ ପଠାଇ ଦିଅନ୍ତୁ ।

ରତ୍ନା ଆସିଲା । ସେଦିନ ଶୁକ୍ରବାର । ସୁନ୍ଦର ଶାଢ଼ୀଟିଏ ପିନ୍ଧିଥିଲା । ତାକୁ ଘରେ ବସାଇ କହିଲି - ବସ, ଆଉ ଭଲ ଗୀତଟିଏ ଗାଇ ଶୁଣା, ଏପଟେ ରଂଗପ୍ପାକୁ ଡ଼କାଇ ପଠାଇଲି । କୃଷ୍ଣ ମୂର୍ତ୍ତି କଣ୍ଣ ମୁନେ ନିଂଚି ଦଂଚି ଦେ.....' ମଧୁର ସ୍ୱରରେ ରତ୍ନା ଗାଉଥିବା ବେଳେ ରଂଗପ୍ପା ଆସି ପହଞ୍ଚିଲା । ବାଟ ଦରଜା ଟପି ଆସୁଁ ଆସୁଁ ଦାଣ୍ଡ ଦୁଆରେ ଅଟକି ଗଲା । ଆଗକୁ ଆସିଲେ ବାଳେ ଗୀତ ବନ୍ଦ ହୋଇଯିବ । ହେଲେ ଏପଟେ ଗୀତ ଗାଉଥିବା ଝିଅକୁ ଦେଖିବାର ଅଦମ୍ୟ କୌତୁହଳ ! ଦରଜାରୁ ଭିତରକୁ ଉଙ୍କି ମାରିଲା ତା'ଛାଇ ଦେଖି ରତ୍ନାର ଆଖି ଆପେଆପେ କବାଟ ଆଡ଼କୁ ବୁଲିଗଲା । ଅଚିହ୍ନା ଲୋକଟିଏ ଆସିବା ଦେଖି ସେ ଗୀତ ବନ୍ଦ କରିଦେଲା ।

ଆଚ୍ଛା ! ଆପଣ ଆମ୍ବ ଖାଆନ୍ତି ନା ? ଆଉ ଯଦି ଆପଣ ଆମ୍ବ କିଣି ଖାଆନ୍ତି ତାହେଲେ ତାର ରସ ନଷ୍ଟ ନ ହେବ ଭାବି ପ୍ରଥମେ ଆମ୍ବର ଛାଲି ଛଡ଼େଇ ଖାଆନ୍ତି, ତାପରେ ଆମ୍ବକୁ ଅଳ୍ପ ଚାଖି ଚୋଷି ବାକି ଭାଗକୁ ଖାଇବାର ଯତ୍ନ କରନ୍ତି । ଠିକ୍ ସେତେବେଳେ ଆମ୍ବ ହାତରୁ ଖସି ଯାଇ ବାଲିରେ ପଡ଼ିଗଲେ ଆପଣଙ୍କୁ ଯେତିକି ଦୁଃଖ ହେବ ସେମିତି ପଶ୍ଚାତାପର ଭାବ ରଂଗପ୍ପାର ମୁହଁରେ ସ୍ପଷ୍ଟ ବାରି ହୋଇଗଲା ।

ଆପଣ ମତେ ଡ଼ାକିଥିଲେ ? ପଚାରୁ ପଚାରୁ ଭିତରକୁ ପଶି ଆସିଲା । ଆଉ ଚୌକିରେ ବସି ପଡ଼ିଲା । ରତ୍ନା ମୁହଁ ତଳ କରି ଠିଆ ହୋଇ ପଡ଼ିଲା । ରଂଗପ୍ପା କେତେବେଳେ କେମିତି ନ ଜାଣିଲାପରି ତା ଆଡ଼କୁ ଅନେଇ ଦେଉଥିଲା । ଥରେ ଯେତେବେଳେ ତା ଚାହାଣୀ ମୋ ଚାହାଣୀରେ ମିଶିଗଲା, ଲାଜେଇ ଗଲା ।

ବହୁ ସମୟଯାଏ ନୀରବତା ଛାଇ ଗଲା । ଶେଷରେ ନୀରବତା ଭାଙ୍ଗି ରଂଗପା କହିଲା,

- ମୁଁ ଆସିବାରୁ ଗୀତ ବନ୍ଦ ହୋଇଗଲା - ଆଚ୍ଛା ମୁଁ ଯାଉଛି କହି ଚୌକିରୁ ଉଠିଲା ନାହିଁ । ଏଇ କଳିଯୁଗର ତ୍ରିକରଣର ଶୁଦ୍ଧି କାହିଁ ?

ରତ୍ନା ଲାଜରେ ଘର ଭିତରକୁ ଦଉଡ଼ି ପଳେଇଲା । କିଛି ବେଳ ମୁକପରି ବସିବା

ପରେ ରଂଗପ୍ପା ପଚାରିଲା - ଭଏ କିଏ କି ସାର ?

ଗୋଟିଏ ଗପରେ ଅଛି ଘର ଭିତରେ ବନ୍ଧା ଏକ ଛେଳି । ବାହାରେ ଠିଆ ହୋଇ ସିଂହଟିଏ ପ୍ରଶ୍ନ କଲା-ଭିତରେ କିଏ ଅଛି ? ଛେଳି କହିଲା- ଯିଏ ବି ଥାଉ, ମୁଁ ନିର୍ଜିବ ପ୍ରାଣୀଟିଏ । ନଅଟି ସିଂହ ଖାଇ ସାରିଛି ଆଉ ଗୋଟିକର ଅପେକ୍ଷାରେ ଅଛି, ତୁ ଅଣ୍ଟିରା ନା ମାଈ ? କହିବା କଥା ଏତିକି ଶୁଣିବା ମାତ୍ରେ ସିଂହ ଜୀବନ ବିକଳରେ ପଳେଇଲା । ସେଇ ଛେଳି ପରି ମୁଁ କହିଲି ଯିଏବି ହେଉ ଏଥିରେ ତୋର କ'ଣ ଯାଏ ଆସେ ? ମୁଁ ବିବାହିତ । ଆଉ ତୋର ତ ବିବାହ କରିବାର ହିଁ ନାହିଁ ।

କଣ ସାର ଏ ଯାଏଁ ବିବାହ ହୋଇନାହିଁ ? ଆଶାଭରା ଥିଲା ପ୍ରଶ୍ନ ଯଦିଓ ତାହା ବ୍ୟକ୍ତ ହେବାକୁ ଦେଲା ନାହିଁ ତଥାପି ମୁଁ ବୁଝି ପାରିଥିଲି ।

ବିବାହ ହେବା ବର୍ଷଟିଏ ପୂରିଲା ।

ରଂଗପ୍ପାର ମୁହଁ ପୋଡ଼ା ବାଇଗଣ ପରି ହୋଇଗଲା ।

କିଛି ସମୟପରେ ମୋର କାମ ଅଛି ଯାଉଛି କହି ରଂଗପ୍ପା ଚାଲିଗଲା ।

ପରଦିନ ସକାଳୁ ଶାସ୍ତ୍ରୀ ପାଖକୁ ଯାଇ ଜ୍ୟୋତିଷି ପାଇଁ ଦରକାର ସମସ୍ତ ଜିନିଷ ସଜାଡ଼ି ରଖିବାକୁ କହି ଆସିଲି । ଉପର ବେଳା ରଂଗପ୍ପାର ସହ ଦେଖା କଲାବେଳେ ସେ ସେଇମିତି ଉଦାସ ଥିଲା ।

ପଚାରିଲି - କଣ ଭାଇ ଭାରି ଚିନ୍ତିତ ଜଣାପଡୁଛୁ ?

କି ଚିନ୍ତା ? ନା'ତ କିଛି ନାହିଁ ।

ମୁଣ୍ଡ ବଥଉଛି ? ଚାଲ ବୈଦ୍ୟଙ୍କ ପାଖକୁ ଯିବା ।

ମୁଣ୍ଡ ବଥାଉନି, ମୁଁ ତ ସଦାବେଳେ ଏମିତି ଥାଏଁ ।

ବିବାହ ଆଗରୁ ଝିଅ ବିଷୟରେ ନିଷ୍ପତ୍ତି ନେବା ପର୍ଯ୍ୟନ୍ତ ମୁଁ ମଧ ଏମିତି ରହୁଥିଲି । ତୋ ସହ ଅବଶ୍ୟ ଏମିତି କିଛି ହୋଇ ନଥିବ । ରଂଗପ୍ପା ମତେ ଅପଲକ ଚାହିଁ ରହିଲା ।

- ଚାଲ ଶାସ୍ତ୍ରୀ ପାଖକୁ ଯିବା । କିଛି ନ ହେଲେ ଗୁରୁଦଶା, ଶନିଦଶା ଠିକ୍ ଅଛି କି ନାହିଁ ପଚାରି ଆସିବା ।

- କିଛି ନ ଭାବି ରଂଗପ୍ପା ଉଠି ପଡ଼ିଲା । ଆମେ ଶାସ୍ତ୍ରୀ ପାଖରେ ପହଞ୍ଚିଲୁ ।

ଆରେ ଶ୍ୟାମ, ବହୁତ ଦିନପରେ ତମକୁ ଦେଖୁଛି, ସେ ପଚାରିଲେ ।

ଶ୍ୟାମ, ଏଇ ଗପ ଶୁଣାଉଥିବା ଲୋକର ନାଁ । ଗପୁଡ଼ିଲୋକ, କିନ୍ତୁ କହୁ କହୁ ରହିଗଲି । "ଆଜି ସମୟ ମିଳିଲା ଯା ପୂର୍ବରୁ କାର୍ଯ୍ୟବ୍ୟସ୍ତ ଥିଲି" କହି ବାକ୍ୟ ପୂର୍ଣ୍ଣ କଲି । ନାଇଁ ତ ମୁଁ କ'ଣ ପାଗଳ ଯେ କହିଥାନ୍ତି "ଆଜି ସକାଳୁ ଆସିଥିଲି" ତା ହେଲେ ସବୁ ଯୋଜନା ବ୍ୟର୍ଥ ହୋଇ ଯାଉଥାନ୍ତା । ତେଣୁ ମୁଁ ସତର୍କ ରହିଲି ।

ଏଇ ବାବୁ କେବେବେଳେ ଆସିଲେ । ଯାଙ୍କର କି ସେବା କରିବା । ଆମ ଘରକୁତ ଖୁବ କମ ଆସନ୍ତି । ଏହିପରି ସ୍ନେହ ଆଉ ଆଦରର କଥା ହେଲା । ନିଜର ପୋଥପତ ଟିକେ ଫିଟା । ଆଜିକାଲି ରଂଗପା ଭାରି ଉଦାସ ରହୁଛି. ତା'ର କାରଣ କହି

ପାରିବୁ ଯଦି କହ ? ତୋର ଜ୍ୟୋତିଷି ଜ୍ଞାନକୁ ମଧ୍ୟ ପରଖିବାର ଅଛି । ମୁଁ ରାଗିଯାଇ କହିଲି । ଶାସ୍ତ୍ରୀ କଉଡ଼ି ଆଉ ତାଳପତ୍ର ପୋଥିଟିଏ ଫିଟାଇ କହିଲା - ''ଏହା ଅନାଦି କାଳର କଥା ଯା ସହିତ ଏକ କାହାଣୀ ମଧ୍ୟ ଅଛି ଆଉ ସେ କାହାଣୀ ଟିଏ ଶୁଣାଇବାକୁ ଲାଗିଲା ।'' ମୁଁ ଏଠି କାହାଣୀଟି କହିବି ନାହିଁ । ଯେ କଣ ପ୍ରବନ୍ଧ ଯେ, କଥା ଭିତରେ ଉପକଥା ଶୁଣାଇବି ? ଆପଣ ମାନେ ମଧ୍ୟ ବିରକ୍ତ ହେବେ । ହଁ ଯଦି କେତେବେଳେ ଅବକାଶ ମିଳିଲେ ଶୁଣାଇବି ।

ଶାସ୍ତ୍ରୀ କିଛି ସମୟ ଓଠ ହଲେଇ ଆଙ୍ଗୁଠି ଗଣି ପଚାରିଲା - ଆପଣଙ୍କର ନକ୍ଷତ୍ର ?

ରଂଗପ୍ପା ଜାଣି ନଥିବା କଥା ସଂକେତରେ କହିଲା ।

କିଛି ଭାବିବାର ନାହିଁ କହି ମୁଣ୍ଡ ହଲେଇ ଆଙ୍ଗୁଠି ଗଣି ଶାସ୍ତ୍ରୀ ଅତ୍ୟନ୍ତ ଗମ୍ଭୀର ସ୍ୱରରେ କହିଲା - କଥାଟି ଝିଅ ସଂପର୍କରେ । ତାର ହାବଭାବ ଦେଖି ମତେ ହସ ମାଡୁଥିଲା । ଖୁବ୍ କଷ୍ଟରେ ହସ ଚାପିରଖିବାକୁ ପଡ଼ିଲା । କିନ୍ତୁ ଶାସ୍ତ୍ରୀର କଥାରେ ପୁଣି ହସ ପକାଇଲି ଆଉ କହିଲି...

କ'ଣ ରଂଗପ୍ପା ମୋର ଅନୁମାନ ସଚ ହେଲା ନାଁ ?

- ଝିଅଟି କିଏ ? ପ୍ରଶ୍ନଟି ମୁଁ ଅର୍ଥାତ ଆପଣ ମାନଙ୍କ ଦାସାନୁଦାସ ଶ୍ୟାମ ପଚାରିଲା ।

କିଛି କାଳ ଚିନ୍ତା କରି ଶାସ୍ତ୍ରୀ କହିଲା - ଝିଅର ନାମ ସମୁଦ୍ରରୁ ମିଳୁଥିବା ଏକ ଜିନିଷ ଉପରେ ଆଧାରିତ ।

- ପଦ୍ମ ?

ହୋଇପାରେ,

- ଶିଉଳୀ ?

ପଦ୍ମ ନ ହେଲେ ଶିଉଳୀ ? ମୋତି, ରତ୍ନ...

- ରତ୍ନା ! ଯେଉଁ ଝିଅ ଟି ରାମାରାଓ ଘରକୁ ଆସିଥିଲା । ତା ନାଁ ଟା ତ ରତ୍ନା ।

ସେ ଯାହା ହେଉ କନ୍ୟାଲାଭ ଯୋଗ ଅଛି । ପୁଣି ଚିନ୍ତା କରି - ଲାଭ ହେବ ?

ରଂଗପ୍ପାର ମୁହଁ ବିସ୍ମୟ ଚକିତ । ସେଥିରେ କିଛି ଆନନ୍ଦ ବି ମିଶି ରହିଥିଲା । ତାହା ଦେଖି ମୁଁ କହିଲି - ସେ ଝିଅଟିର ବିବାହ ତ ହୋଇ ଯାଇଛି ନା ?

କଥାଟି କହି ପଛକୁ ଅନେଇ ଦେଖିଲି, ରଂଗପ୍ପା ମୁହଁର ରଂଗ ଫିକା ପଡ଼ି ଯାଇଥିଲା ।

- ମୁଁ ଜାଣିନି । ହୁଏତ ଆଉ କିଏ ହୋଇଥିବ । ପାଠ ଯାହା କହିଲା ସେଇଟା ହିଁ ବତାଇ ଦେଇଛି ।

ସେଇଠୁ ଆମେ ଫେରିଲୁ । ଫେରିବା ବେଳେ ରାମାରାଓ ଘର ସାମ୍ନାରେ ରତ୍ନା

ଠିଆ ହୋଇଥିଲା । ମୁଁ ଏକା ଭିତରକୁ ଯାଇ ଫେରି ଆସିଲି । ଆସିବା କ୍ଷଣି ରଂଗପ୍ପାକୁ କହିଲି, କି ଆଶ୍ଚର୍ଯ୍ୟ କଥା ଏମାନେ କହୁଛନ୍ତି ଝିଅଟିର ବିବାହ ହୋଇ ନାହିଁ । ସେ ଦିନ କିଏ ଜଣେ କହିଲା ତାର ବିବାହ ସରିଛି । ଶାସ୍ତ୍ରୀର କଥା କଣ ତାହେଲେ ଠିକ୍ ହେଲା । ରଂଗପ୍ପା ତୁ ଏଇ ଝିଅଟି ବିଷୟରେ ଭାବୁଛୁ । ମୁଁ କମା ମାନିବି ନାହିଁ । କ'ଣ ରଂଗପ୍ପା ତୋତେ ମାଧବାଚାର୍ଯ୍ୟ ଙ୍କ ରାଣ ଲୁଚାଇବୁ ନାହିଁ । ସିଏ ଯାହା କହିଲେ ତା' ମିଛ ନା ସଚ ?

ମୁଁ ଜାଣିନି ଅନ୍ୟ କେହି ହୋଇଥିଲେ କହି ଥାଆନ୍ତା କି ନାହିଁ, ରଂଗପ୍ପା ତ ସ୍ୱୀକାରୋକ୍ତି ସହ ଜଣାଇ ଦେଲା - ଆମେ ଯେତେ ଜାଣିଛୁଁ ତାଠୁଁ ଶାସ୍ତ୍ରର କଥା ଅଧିକ ସଚ । ସିଏ ଯାହାବି କହିଛନ୍ତି ସଚ କହିଛନ୍ତି ।

ସେହି ଦିନ ସଂନ୍ଧ୍ୟା ବେଳେ ଶାସ୍ତ୍ରୀ କୁଅଁ ପାଖରେ ଦେଖାହେଲେ । ମୁଁ କହିଲି - ଶାସ୍ତ୍ରୀଜୀ ମୁଁ ତୁମକୁ ଯାହା ଶିଖାଇ ଥିଲି, ତାକୁ ତମେ ଏମିତି ଢ଼ଂଗରେ ଜଣାଇଲ ଯେ ତା'ର ତିଳ ପ୍ରମାଣେ ସନ୍ଦେହ ରହିଲା ନାହିଁ । ବାପ୍ପା'ରେ ! ତୁମ ଶାସ୍ତ୍ରର ପଟାନ୍ତର ନାହିଁ । ଶାସ୍ତ୍ରୀ ଉତ୍ତର ଦେଲେ - ତୁମେ କ'ଣ ଶିଖାଇଥିଲ ? ଶାସ୍ତ୍ର ଅନୁସାରେ ଯାହା ଖୋଜା ଯାଇପାରେ ତାହାହିଁତ ତମେ କହିଥିଲ । ତୁମେ ମତେ ଶିଖାଇ ନଥିଲେ ମଧ ମୁଁ ନିଶ୍ଚୟ ତାହା ହିଁ କହିଥାନ୍ତି । ତୁମେତ ଅଳ୍ପ କିଛି କହିଥିଲ, କହତ ଦେଖି ମୁଁ କେତେ କଥା ବଢାଇ ଦେଲି ? ବୁଦ୍ଧିମାନ ଲୋକଙ୍କ କାମ ଏମିତି ନା........।

* * * * * * * *

ପଅର ଦିନ ରଂଗପ୍ପା ମୋତେ ଖାଇବାପାଇଁ ଡ଼ାକିବାକୁ ଆସିଲା । ମୁଁ କେରା କଲି ଆଜି କ'ଣ ଭାଇ ?

- ଶ୍ୟାମର ଜନ୍ମ ବାର୍ଷିକୀ, ଆଜି ତାକୁ ପୁରା ତିନି ବର୍ଷ ହେଲା ।

ଶ୍ୟାମ ! ନାଁ ଟା କିଛି ଭଲ ଲାଗୁନି । ମୁଁ ତ କୋଇଲା ପରି କଳା, ସେଇ ସୁନାର ପାତ୍ରକୁ ମୋ ନାଁ ଟା ଦେଇ ତୁମେ ମାନେ କିଛି ଭଲ କରିନ । ତୋର ଆଉ ରନ୍ନା ଉଭୟଙ୍କ ସେଇ ଏକ ବୋକାମୀ । ସେ ଯାହାହେଉ ଗୋରା ମାନଙ୍କ ନୀତି (ରିତି) ହିଁ ଏମିତି । (ଇଂରେଜ ମାନେ ସନ୍ତାନ ହେଲେ ନାମକରଣ ବେଳେ ବନ୍ଧୁବର୍ଗଙ୍କୁ ନିମନ୍ତ୍ରଣ କରନ୍ତି ଆଉ କୌଣସି ବନ୍ଧୁର ନାଁରେ ପିଲାଟିର ନାଁ ରଖିବା ଏକ ପ୍ରଚଳିତ ନିୟମ)

ତୋର ସ୍ତ୍ରୀ କୁ ଆଠ ମାସର ଗର୍ଭ ଅଛି । ରୋଷେଇରେ ତୋ ମାଙ୍କୁ ସାହାଯ୍ୟ କିଏ କରିବ ?

- ବଡ଼ ଭଉଣୀ ଆସିଛି ।

ଭୋଜିଦିନ ମୁଁ ଯାଇଥିଲି । ଯିବାମାତ୍ରେ ଶ୍ୟାମ ମୋ ପାଦରେ ଲୋଟିଗଲା । ତାର ଗାଲରେ ଚୁମା ଖାଇଲି ଆଉ ନରମ ଆଙ୍ଗୁଠିରେ ମୁଦିଟିଏ ପିନ୍ଧେଇ ଦେଲି ।

ମହାଶୟ ! ଏବେ ଆପଣଙ୍କ ଏହି ଦାସାନୁଦାସକୁ ଛୁଟି ଦିଅନ୍ତୁ । ଏମିତି, ମୁଁ ସବୁବେଳେ ଆପଣଙ୍କ ସେବାରେ ତତ୍ପର ରହିବି । ଆପଣ ବିରକ୍ତ ହେଉ ନାହାନ୍ତି ତ ?

*ଭାଷାନ୍ତର : ସନାତନ ଠାକୁର*



ବେଙ୍ଗୟିଲ କୁଁଜିରାମନ୍ ନାୟନାରଙ୍କ ଜନ୍ମ ୧୮୬୧ ମସିହାରେ ଉତ୍ତର କେରଳର ଏକ ସବର୍ଣ୍ଣ ପରିବାରରେ । ସାମ୍ବାଦିକତା କ୍ଷେତ୍ରରେ ବେଙ୍ଗୟିଲ କୁଁଜିରାମନ୍‌ଙ୍କ ଯୋଗଦାନ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ସେ ଥିଲେ ମୁଖ୍ୟତଃ ହାସ୍ୟ ଓ ବ୍ୟଙ୍ଗ ଲେଖକ । ଭ୍ରଷ୍ଟାଚାର ବିରୁଦ୍ଧରେ ଲେଖି ଚାକିରୀ ହରେଇବା ଭଳି ଘଟଣା ତାଙ୍କ ଲେଖକୀୟ ଶକ୍ତିର ଉଜ୍ଜ୍ୱଳ ଦୃଷ୍ଟାନ୍ତ । 'କେଶରୀ', 'ବଜ୍ରବାହୁ', 'ଦେଶାଭିମାନୀ' ଇତ୍ୟାଦି ବହୁ ଛଦ୍ମନାମରେ ତାଙ୍କର ରଚନା ଗୁଡ଼ିକ ପ୍ରକାଶିତ । ବ୍ୟଙ୍ଗ ରଚନା ବ୍ୟତିତ କେତୋଟି କାହାଣୀ ମଧ୍ୟ ସେ ଲେଖିଥିଲେ । ୧୮୯୧ ମସିହାରେ ପ୍ରକାଶିତ ତାଙ୍କ ରଚିତ 'ବାସନା ବିକୃତି' କ୍ଷୁଦ୍ରଗଳ୍ପ ମାଲାୟାଲମ ସାହିତ୍ୟର ପ୍ରଥମ ମୌଳିକ ଗଳ୍ପ ଭାବରେ ସ୍ୱୀକୃତ ।

# ବାସନା-ବିକୃତି

ରାଜଦଣ୍ଡ ଭୋଗିଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ମୋ'ପରି ହତଭାଗା ଆଉ କେହି ଜନ୍ମ ହୋଇ ନାହାନ୍ତି । ମୋର କହିବା ଅର୍ଥ ଏହା ନୁହେଁ ଯେ ମୋ'ଠୁ ବେଶୀ ଦୁଃଖ ଆଉ କେହି ଭୋଗି ନାହାନ୍ତି ବା ଭୋଗୁ ନାହାନ୍ତି । କିନ୍ତୁ ନିଜ ନିର୍ବୋଧର କାରଣରୁ ଦଣ୍ଡିତ ହୋଇଥିବା ମୋ'ପରି କମ୍ ଲୋକ ହିଁ ଥିବେ । ଏହା ହିଁ ମୋର ଦୁଃଖ । ଭଗବାନ ଦେଇଥିବା କଷ୍ଟ ଭୋଗିବାରେ ମୋର କିଛି ଲଜ୍ଜା ନହିଁ । ଚତୁର ପୋଲିସ ଅଫିସର ମାନଙ୍କ ଦ୍ୱାରା ଧରାପଡ଼ିବାର ଦୁଃଖ ବି ସହ୍ୟ କରା ଯାଇପାରେ କିନ୍ତୁ ନିଜ ଅଭିଯୋଗର ଜାଲରେ ବାନ୍ଧିହୋଇ ଚର୍ହିରେ ଗୁଡ଼େଇ ହେବା ଦୁଃସହ ନୁହେଁ କି ? ତା'ପରେ ଯଦି ଅବୁଝା ପିଲାମାନେ ଜାଣି ଯିବେ କି ମୁଁ ନିପଟ ବୁଦ୍ଧୁ, ତା'ହେଲେ ବହୁତ ଦୁଃଖର କଥା । ପ୍ରକୃତରେ ଏହା ହିଁ ମୋ ପାଇଁ ଲଜ୍ଜାକର ।

କୋଚିନ ରାଜ୍ୟର ଏକ ଜଙ୍ଗଲ ପାଖରେ ମୋର ଘର । ମୁଁ କେବଳ ଏତିକି କହିବି; ହୁଏତ ଆପଣ ମାନଙ୍କ ମଧ୍ୟ ଏମିତି ଅନୁଭବ ଥିବ । ବେଳେବେଳେ ଗୋଟେ ପରିବାରରେ କିଛି ଲୋକ ହୋଇଥିବେ କଳା, ଆଉ କିଛି ଲୋକ ଗୋରା । ଆମର ପରିବାରରେ ମଧ୍ୟ ଏମିତି ରହିଛି । ଅଥଚ ଏ ରଙ୍ଗ ଭେଦ ଶରୀରର ନୁହଁ, ଆଭିଜାତ୍ୟର । ସବୁ ସମୟରେ ପରିବାରର କିଛି ଲୋକ ସଜ୍ଜନ ଥିବାବେଳେ; ଆଉ କିଛି ଲୋକ ବଦମାସ । ଏହି ତଫାତ୍ କାଲି - ପରଦିନର ନୁହେଁ, ପୂର୍ବପୁରୁଷଙ୍କ କାଳରୁ ଚଳି ଆସିଅଛି । ଆଉ ଏମାନଙ୍କ ମଧ୍ୟରୁ ଦୁଷ୍ଟ ମାନଙ୍କ କୁଳରେ ମୋର ଜନ୍ମ । ଇକଣ୍ଟ କୁରୂପ ଓ ରାମନ ନାୟର - ଏଇ ଦୁଇ ମହାପୁରୁଷଙ୍କ ବିଷୟରେ ଆପଣଙ୍କ ମଧ୍ୟରୁ କେହି କେହି ଶୁଣିଥିବେ । ପ୍ରଥମ ସଜ୍ଜନ ମୋର ଚତୁର୍ଥ ପୀଢ଼ିର ପିତୃପୁରୁଷ, ଚାରି ପୀଢ଼ି ପୂର୍ବର ମାମୁଁ ମଧ୍ୟ । ଏହାଙ୍କର ସ୍ମୃତିରେ ମୋତେ ବି ସେହି ନାମ ଦିଆଯାଇଥିଲା । ଏଥି ଯୋଗୁଁ ଉଭୟ ପିତୃକୁଳ ଓ ମାତୃକୁଳରୁ ମୋତେ ଚୋର ହେବାର ବାସନା ଓ ସୁଯୋଗ ମିଳିଥିଲା । ମୋର ପରମ୍ପରାର ମହତ୍ତ୍ୱ ସମସ୍ତେ ସଂପୂର୍ଣ୍ଣ ରୂପରେ ଜାଣି ନିଅନ୍ତୁ ଏଥିପାଇଁ ଏହା କହିବା ଜରୁରୀ ହୋଇଯାଇଛି ଯେ ମୋର ଚତୁର୍ଥ ପିଢ଼ୀର ପିତୃପୁରୁଷ ଇକଣ୍ଟ କୁରୂପଙ୍କର ପିତାମହ ଇଟଟ ନାରାୟଣନ ନିପୁତ୍ରୀ ଥିଲେ । ଯଦି ଇଟଟି ନାରାୟଣନଙ୍କ କଥା କୌଣସି ମୂର୍ଖ ଶୁଣି ନାହାନ୍ତି, ତେବେ ତାଙ୍କ ଲାଗି ମୁଁ ଏହା ଲେଖୁ ନାହିଁ । ପିଲାଦିନରୁ ହିଁ ମୋତେ ନିଜ କୁଳରୁ ଅଲଗା କରିବା ଲାଗି କେତେକ ଚେଷ୍ଟା କରିଥିଲେ । ସେମାନେ ଏଥିରେ ଯଦିଓ ସଫଳ ହୋଇ ପାରିଲେ ନାହିଁ, ତ' ତେବେ ଏହା ତାଙ୍କ ପ୍ରଚେଷ୍ଟାର ଅଭାବରୁ ନୁହେଁ, ଏହା ମୁଁ ଶପଥ କରି କହିପାରେ । ମୋର ବାସନାର ବଳ ହିଁ କୁହନ୍ତୁ । ଏହା ତ କେବେ କୁହାଯାଇ ପାରିବନି ଯେ ମୁଁ ପଢ଼ାପଢ଼ିରେ ସବଳ ନ'ଥିଲି । ମୋର ସହପାଠୀ ମାନଙ୍କ ମଧ୍ୟରୁ ଅଧିକାଂଶ ମୋ' ତୁଳନାରେ ପଛରେ ଥିଲେ । ଆମର

ଗୁରୁଦେବ ଏହାର ସାକ୍ଷୀ । ମାଲୟାଲମରେଏପରି କେତେଜଣ ଧୁରନ୍ଧର ବିଦ୍ୱାନ ଅଛନ୍ତି ଯେଉଁମାନେ କି ଦଶବର୍ଷ ଭିତରେ ତିରିଶ ସର୍ଗ ବିଶିଷ୍ଟ କାବ୍ୟ ପଢ଼ି କେବଳ 'ଗଣାଷ୍ଟକ ବ୍ୟୁତ୍ପତ୍ତି' ହୋଇ ରହିଯାନ୍ତି । ମୁଁ ତ' ଛଅ-ସାତ ସର୍ଗ ଯାଏ କାବ୍ୟ ପଢ଼ିଛି । ମୋର ତ ଏତିକି ଜ୍ଞାନ ନ'ଥିଲା ଯେ ମୁଁ ବ୍ୟୁତ୍ପନ୍ନ ହୋଇଗଲି ବୋଲି ଡ଼ିଣ୍ଡିମ ପିଟିବି । ତଥାପି ବି ଯଦି ଟୀକା ରହିଛି ତେବେ ବିନା କାହାରି ସହାୟତାରେ ଅର୍ଥ ବୁଝିବାର ଜ୍ଞାନ ମୋର ହୋଇଥିଲା । ଯେତେଦିନ ଯାଏ ମୋତେ ଏତିକି ପ୍ରାପ୍ତି ହେଲା, ଉଭୟ ପରଂପରାରୁ ମିଳିଥିବା ବାସନାର କାରଣରୁ ମୋର ଆଉ ସେଥିରେ ରୁଚି ରହିଲା ନାହିଁ ।

ଜଙ୍ଗଲ ପାଖରେ ଘର ହୋଇଥିବାରୁ କେବେ କେମିତି ଜଙ୍ଗଲକୁ ଯିବା ଆଉ ଜୀବଜନ୍ତୁଙ୍କୁ ଶିକାର କରିବାର ଅବସର ମିଳିଛି, ଏଣୁ ପିଲାଦିନୁଁ, 'ଡ଼ର' ନାମକ ଶବ୍ଦର କିଛି ଅର୍ଥ ମୋର ଜୀବନରେ ରହିଲା ନାହିଁ । ପଢ଼ିଲା ଦିନ ମାନଙ୍କରେ ବି ମୁଁ ଖୁବ୍ ମାଡ଼ ଖାଉଥିଲି । ପୁଣି କୋଡ଼ିଏ ବର୍ଷର ବୟସ ଡ଼େଇଁ ଯିବାପରେ ମୋର ସ୍ୱଭାବ ପୁରାପୁରି ବଦଳି ଗଲା । ଛୋଟ ଛୋଟ ଚୋରିସବୁ ଛାଡ଼ି ଦେଇ ବଡ଼ବଡ଼ ଚୋରିରେ ମନ ଲଗାଇଲି । ଯେଉଁଠି କିଛି ଦାମିକା ଜିନିଷ ସେଥିରେ ମୋର ଦୃଷ୍ଟି ପଡ଼େ ଆଗେ । ଯେଉଁଠିକି ମୁଁ ଯାଏ, ବଦଳିଯାଏ ସବୁକିଛି । ଏମିତି ମୁଁ ଉପାର୍ଜନ କଲି ବହୁତ ଧନ । କାମରେ ମୁଁ ମୋର ଚତୁର୍ଥ ପିତୃପୁରୁଷଙ୍କୁ ଅନୁକରଣ କରି ନ'ଥିଲି । ଚୋରି ଦୁଇ ପ୍ରକାରର ହୋଇଥାଏ । ଗୋଟିଏ ବଡ଼ ଆଡ଼ମ୍ବର ସହିତ ଅନ୍ୟଟି ଏକୁଟିଆ । ଏଇ ଉଭୟ ମଧ୍ୟରେ ବହୁତ ତଫାତ୍ ଅଛି । ମୋର ଚତୁର୍ଥ ପୁରୁଷ ପୁରୁଣା କାଳିଆ । ତାଙ୍କର ଏକୁଟିଆ ଚୋରି କରିବାରେ ବିଶ୍ୱାସ ନ'ଥିଲା ଆଉ ମୁଁ ନୂଆଁ ଥିଲେ ବି ଦାଦାଜୀ ଇଟଟ ନାରାୟଣନ ମୋର ପକ୍ଷରେ । ଖୁବ୍ ଆରମ୍ଭରୁ ହିଁ ତାଙ୍କଠୁ ଯେଉଁ ନୂତନ ବୁଦ୍ଧି ମିଳିଥିଲା, ତାକୁ ଦେଖି ଲାଗୁଥିଲା କି, ତାଙ୍କର ଗ୍ରାମବାସୀଙ୍କ କହିବାରେ ସେ ଯେ ଅମଣିଷ ଥିଲେ, ଭୁଲ ହେବ ନାହିଁ ।

ଯେତେବେଳେ ମୁଁ ଘରଛାଡ଼ି ପଳେଇଲି ଏବଂ ବାହାରେ ପାଞ୍ଚବର୍ଷଧରି ପଇସା ରୋଜଗାର କଲି ସେତେବେଳକୁ କୋଚିନ ରାଜ୍ୟରେ ନୂଆଁ ପୋଲିସ ବ୍ୟବସ୍ଥା କରାଯାଇଥିଲା । ଥରେ ମୁଁ ତ୍ରିଚୁର ନିକଟରେ ଗୋଟିଏ ଜାଗାରେ ଚୋରି କଲି । 'ତାନ୍ନର' ସାହେବ (ପୋଲିସ ଅଫିସର) ଙ୍କ ଫୁଟିଲା ଆଖିକୁ ଏହା ଅସହ୍ୟ ହେଲା । ଜଣେ ବ୍ରାହ୍ମଣର ଘରେ ଚୋରି ହୋଇଥିଲା । ଘର ମାଲିକର ପୁଅ ହିଁ ଥିଲା ମୋର ସହାୟକ । ସେ ଥିଲା ଜୁଆ ଖେଳରେ ଓସ୍ତାଦ । ତହିଁରେ ସେ ବହୁତ ଗୁଡ଼ାଏ ପଇସା ହାରିଗଲା । ସେ ଋଣଗ୍ରସ୍ତ ହୋଇଗଲା । ଋଣ ପରିଶୋଧ କରିବାର କୌଣସି ତାରା ନ'ଥିଲା । ସେତେବେଳେ ସେ ମୋର ଶରଣାପନ୍ନ ହୋଇଥିଲା । ତା'ର ବାପ ଶୋଇଥିବା ଭିତରେ ତେଇଁ 'ନ' ପଡ଼ିବ, ସେଥିପାଇଁ ମୁଁ ତା' ହାତରେ ଅଫିମ୍ ମିଶା ଔଷଧ ପଠାଇଥିଲି । ସନ୍ଧ୍ୟାରେ ଦୁଧରେ ତାକୁ ମିଳାଇବା ପାଇଁ କହିଥିଲି । ''କେବଳ ଏକ-ଚତୁର୍ଥାଂଶ ହିଁ ଦେବ'' ଖାସ୍ ଏଥିପାଇଁ ମୁଁ ତାଗିଦ୍ ଦେଇଥିଲି । ଘର ଭିତରକୁ ଯାଇ ମୁଁ

ଯଥେଷ୍ଟ ସାମଗ୍ରୀ ଉଠାଇଲି, ଯେତିକି ମୋର ହାତରେ ଧରି ପାରିଲି । ଗୃହସ୍ଥର ମୁଣ୍ଡପଟେ ଯେଉଁ ଗହଣାର ପେଟି ରଖାଯାଇଥିଲା, ତାକୁ ମଧ ହସ୍ତଗତ କରିବା ଲାଗି ତା'ର ମୁଣ୍ଡ ପାଖକୁ ଗଲି । ମୋର ବହୁତ ଭୟ ଥିଲା, କାଳେ ବୁଢ଼ାଟି ଉଠି ପଡ଼ିବ ? ସେ ଏପରି ନିଦରେ ଶୋଇଥିଲା ଯେଉଁଥିରୁ ସେ କେବେ ଆଉ ଉଠି ପାରିବ ନାହିଁ । ଆପଣାର ମନୋରଥ ସାଧନରେ ବାଧା ରହି ନ'ଯାଏ ଭାବି ପୁଅ ତା'ର, ସବୁତକ ଔଷଧ ଦୁଧରେ ମିଶାଇ ଦେଇଥିଲା । ଚୋରି କରିଥିବା ଦ୍ୟବ୍ୟ ମାନଙ୍କ ମଧରୁ ଗହଣାର ବାକ୍ସଟି ମୁଁ ମୋର ପେମିକା କଲ୍ୟାଣୀକୁ ଉପହାର ସ୍ୱରୁପ ଦେଇଥିଲି । ସେ ମୋତେ ଏବଂ ମୁଁ ତାହାକୁ ଭଲ ପାଉଥିଲୁ । ଦିନେ ରାତିରେ ପେଟିରୁ ଗୋଟିଏ ସୁନ୍ଦର ମୁଦି ବାହାର କରି ସେ ମୋର ଆଙ୍ଗୁଠିରେ ପିନ୍ଧାଇ ଦେଲା । ସେଇ 'ଦିନଠୁ ସେଇ ମୁଦି ପ୍ରତି ମୋର ମମତା ହୋଇଯାଇଥିଲା । ତାହା ଥିଲା ଅଳ୍ପ ଢ଼ିଲା, ତଥାପି ମଧ ଆଙ୍ଗୁଠିରୁ ତାକୁ ମୁଁ ବାହାର କରି ନ'ଥିଲି ।

ବ୍ରାହ୍ମଣ ଘରର ଚୋରି ପରେ ପୋଲିସ ମାନଙ୍କ କିଛି ଆଶଙ୍କା ମୋ' ଉପରେ ହେଲା । ସେହି ସମୟ କୋଟୁଗତ୍ରର ମନ୍ଦିର ର ଶିରୋଭୂଷଣର ମଧ ଚୋରି ହୋଇଗଲା । ପୋଲିସର ତଲାସ୍ ଜୋର୍‌ସୋର୍‌ରେ ଚାଲିଲା । ଏହି ସବୁ କାରଣରେ ମୁଁ ସେଠାରେ ରହିପାରିଲି ନାହିଁ । କିଛିଦିନ ଲାଗି ସେଠାରୁ ଅନ୍ୟତ୍ର ରହିବାକୁ ନିଶ୍ଚିତ କଲି । ସିଧା ଚାଲିଗଲି ମାଡ୍ରାସ । ସେଠି କୌଣସି 'ଚାଲାକି' ଦେଖେଇବାର ମୋର ଇଚ୍ଛା ନଥିଲା । କଚେରୀ ବନ୍ଦ ହୁଏ ତ', ତାହାର କର୍ମଚାରୀ ନିଜର ସୁଖ-ସୁବିଧା ପାଇଁ କୁଆଡ଼େ ଚାଲିଯାନ୍ତି । ମୁଁ ମଧ ସେପରି ଅଭିଳାଷ କଲି, ମାଡ୍ରାସ୍ ଯାଇ ଏକମାସ ପର୍ଯ୍ୟନ୍ତ ସେଠାକାର ଦୃଶ୍ୟ ଦେଖିଲି, ବୁଲିବାରେ ଲାଗିଲି । ଦିନେ ଗୁଜିଲୀ ପଡ଼ା ଗଲି ଯେ ଜଣେ ସୁନ୍ଦରୀ ବେଶ୍ୟା ସେଠି ଜିନିଷ କିଣିବାକୁ ଆସିଥିଲା । ଦୋକାନରେ ଭୀଡ଼ ଲାଗିଗଲା, ଏତିକିବେଳେ ଜଣେ ମୂର୍ଖ ଅଧା-ମୁହଁଖୋଲା-ପାନ-ରଂଗିଆ ଦାନ୍ତ ଦେଖାଇ ସେଇ ବେଶ୍ୟାକୁ ଦେଖିବାକୁ ଲାଗିଲା । ତାହାର 'ବାଦଶାହୀ' କାଏଦା ଦେଖି ମୁଁ ନିଶ୍ଚିତ କଲି ଯେ ତାକୁ ବୁଦ୍ଧୁ ବନେଇବାକୁ ହେବ । ଅନାବଶ୍ୟକ କାମରେ ଦଖଲ ନ'ଦେବାର ପ୍ରତିଜ୍ଞାକୁ ବର୍ତ୍ତମାନ ପାଇଁ ପ୍ରାୟତଃ ଭୁଲିଗଲି । ମୁଁ ମଧ ଭୀଡ଼ ମଧରେ ପଶିଗଲି । ସେ ମୁର୍ଖର ପକେଟରେ ପଶାଇଲି ମୋର ବାଁ ହାତ । ଏ ପ୍ରକାର ଚୋରିରେ ସଫଳ ହେବା ପାଇଁ ଅର୍ଜ୍ଜୁନ ଭଳି ସବ୍ୟସାଚୀତ୍ୱ ହାସଲ କରିବା ଦରକାର । ଦୁଇହାତ ଏକ ସାଙ୍ଗରେ ବିନିଯୋଗ କରିବାର ଦକ୍ଷତା ନ'ହେଲେ ବାଜି ହାରିଯିବା କଥା । ଲୋକଟିର ପକେଟରୁ ଗୋଟିଏ ଡ଼ାଏରୀ ବାହାର କରି ମୁଁ ଖସି ପଳେଇଲି । ରାତିରେ ଖାଦ୍ୟଖାଇ ଶୋଇ ପଡ଼ିଲି । ମଝିରେ ଧଡ଼ପଡ଼େଇ ଉଠିଲି କଲ୍ୟାଣୀର ସ୍ୱପ୍ନ ଦେଖି । ''ଏକ ସମ୍ବନ୍ଧିଜ୍ଞାନଂ ଅପର ସମ୍ବନ୍ଧି ସ୍ମାରକମ୍'' ର କଥା ଅନୁଯାୟୀ ମତେ ମୁଦି କଥା ମନେ ପଡ଼ିଲା । ଦେଖିଲି ଯେ ଆଙ୍ଗୁଠିରୁ ମୁଦି ନିଖୋଜ । ମତେ ବଡ଼ ଦୁଃଖ ଲାଗିଲା । ମୁଁ ବହୁତ ଚିନ୍ତା କଲି କେଉଁଠାରେ ଢଳି ଯାଇ ଥାଇପାରେ ? କିନ୍ତୁ କିଛି ମନେ ପଡ଼ିଲା ନାହିଁ । ଅପରଦିନ

ସକାଳୁ ଉଠି ଗତକାଲି ଯେଉଁ ଯେଉଁ ରାସ୍ତାଦେଇ ଯାଇଥିଲି, ସେଇସବୁ ରାସ୍ତା ଓ ଘର ପାଖ ଦେଇ ଗଲି । ପଚରା ଉଚୁରା ମଧ୍ୟ ଅନେକଙ୍କୁ କଲି । ସମ୍ଭବ ହେଇପାରେ କି ତଳେ ପଡ଼ିଯାଇଛି ଏବଂ କିଏ ଉଠାଇଛି । ପୋଲିସ୍ ଷ୍ଟେସନ୍ ଯାଇ ରିପୋର୍ଟ ଲେଖାଇଲି । ଏହି ବୋକାମୀ ଏହା ଭାବି କରିଥିଲି ଯେ, ଯଦି ସେମାନଙ୍କର ହାତକୁ ମୁଦି ଆସି ପହଞ୍ଚି ଯିବ ?

ସେହିଦିନ ଦ୍ୱି-ପ୍ରହର ପରେ ପରେ ଜଣେ ପୋଲିସ ସିପାହୀ ମୋ ପାଖରେ ପହଞ୍ଚିଲା । ଦେଖିଲାମାତ୍ରେ ମତେ ଡ଼ାକିଲା, ଯେମିତିକି ମୋର ମୁଦି ଫେରି ପାଇଗଲି । କିନ୍ତୁ ତାହା ଫେରାଇବାରେ ସିପାହୀର ଦ୍ୱିଧା ଦେଖି ମୁଁ ଭାବିଲି ହୁଏତ କିଛି ପୁରସ୍କାର ଚାହୁଁଛି । ମୁଁ ପାଞ୍ଚଟଙ୍କିଆ ନୋଟଟିଏ ଦେଖେଇଲି ବି.........

କ'ଣ ଆପଣ ଜାଣନ୍ତି ଏହି ମୁଦି ମୋ' ପାଖକୁ କେମିତି ଆସିଲା ? ସେ ମତେ ପଚାରିଲା ।

ଓଃ ! କାମ ହାସଲ ହୋଇଗଲା । ମୁଁ ଅଜାଣତରେ କହି ପକାଇଲି ଓ ସ୍ତମ୍ଭୀଭୂତ ହେବା ପରି ବସି ପଡ଼ିଲି......। ଯେତେବେଳେ ମୁଁ ସଚେତନ ହେଲି ମୋର ହାତରେ ହାତକଡ଼ି ପଡ଼ି ସାରିଥିଲା । ମୋର ପକେଟରୁ ଡ଼ାଏରୀ ବି ବାହାର କରି ନିଆଯାଇଥିଲା । ତାକୁ ଟେବୁଲ ଉପରେ ରଖା ଯାଇଥିଲା । ଏହି ବୋକାମୀର ଉପାର୍ଜନ - 'ଛ-ମାସର କାରାଦଣ୍ଡ ଓ ବାରଟା କୋରଡ଼ା'ର ପରେ ଆଗକୁ ମଧ୍ୟ ଯଦି ଏଇ ବ୍ୟବସାୟ ଜାରି ରଖିବି, ତାହା ମୋର ଚତୁର୍ଥ ପିତୃପୁରୁଷଙ୍କ ଅପମାନ ହେବ, ସମସ୍ତେ କହନ୍ତି ଯେ ଚୋରି ଖରାପ, ମୁଁ ମୋର ବ୍ୟବସାୟ ଓ ପୁର୍ବ ପୁରୁଷଙ୍କ ପରଂପରା ବଦଳାଇ ଦେବି । ଏ ପର୍ଯ୍ୟନ୍ତ କରିଥିବା ପାପର ମୁକ୍ତି ଓ ଆଗକୁ ଏହାର ପୁନରାବୃତ୍ତି ନ'କରିବାର ବୁଦ୍ଧି ପାଇଁ ଗଙ୍ଗାସ୍ନାନ ଓ ବିଶ୍ୱନାଥ ଦର୍ଶନ କରିବି । ଅନେକ ବର୍ଷ ପୂର୍ବରୁ ଆଈ ମାଁ ସନ୍ଧ୍ୟା ଭଜନରେ ଗାଉଥିଲେ :

ଶ୍ରୁତି ସ୍ମୃତିଭ୍ୟାମ ବିହିତା ବ୍ରତୋଦୟଃ
ପୁନନ୍ତି ପାପମ ନ ଲୁନନ୍ତି ବାସନାମ୍ ।
ଅନନ୍ତ ସେବା ତୁ ନିକୃନ୍ତତି ଦ୍ୱୟୀଂ
ଇତି ପ୍ରଭୋ ! ତ୍ୱତ ପୁରୁଷା ନଭାପିରେ ।

*ଭାଷାନ୍ତର : ବିନୟ କୁମାର ଦାଶ*



ବଙ୍ଗଳା ସାହିତ୍ୟର ଆଦ୍ୟ କଥାକାର ଶ୍ରୀ ରବୀନ୍ଦ୍ରନାଥ ଟେଗୋରଙ୍କ ଜନ୍ମ ୧୮୬୧ ମସିହାରେ । ସେ ମୂଳତଃ ଥିଲେ କବି । କିନ୍ତୁ କବିତାର ସହିତ ସାହିତ୍ୟର ଅନ୍ୟାନ୍ୟ ବିଭାଗରେ ମଧ୍ୟ ତାଙ୍କ ପ୍ରତିଭାର ସ୍ୱାକ୍ଷର ନିହିତ । କବିଗୁରୁ ରବୀନ୍ଦ୍ରନାଥ ହେଉଛନ୍ତି ଏକମାତ୍ର ଭାରତୀୟ ଲେଖକ ଯେ, ସାହିତ୍ୟ ପାଇଁ ନୋବେଲ ପୁରସ୍କାରରେ ସମ୍ମାନୀତ । ତାଙ୍କର ଗଳ୍ପ 'ଭିକାରୁଣୀ' ବଙ୍ଗଳା ସାହିତ୍ୟର ପ୍ରଥମ ଗଳ୍ପ ଭାବରେ ସ୍ୱୀକୃତ, ଯାହାକୁ ରବୀନ୍ଦ୍ରନାଥ ୧୬ବର୍ଷ ବୟସରେ ଲେଖିଥିଲେ ।

# ଭିକାରୁଣୀ

## ।। ପ୍ରଥମ ପରିଚ୍ଛେଦ ।।

କାଶ୍ମୀରର ଦିଗନ୍ତବ୍ୟାପୀ ଜଳଦ-ସ୍ପର୍ଶୀ ଶୈଳମାଳା ମଧ୍ୟରେ ଗୋଟିଏ କ୍ଷୁଦ୍ର ଗ୍ରାମ । କ୍ଷୁଦ୍ର କ୍ଷୁଦ୍ର କୁଟୀର ଅନ୍ଧାରୁଆ ବଣବୁଦା ମଧ୍ୟରେ ପ୍ରଚ୍ଛନ୍ନ । ଏଠି ସେଠି ଶ୍ରେଣୀବଦ୍ଧ ବୃକ୍ଷଛାୟା ମଧ୍ୟରେ ଗୋଟିଏ ଦୁଇଟି ଶୀର୍ଣ୍ଣକାୟ, ଚଞ୍ଚଳ, କ୍ରୀଡ଼ାଶୀଳ ନିର୍ଝର ଗ୍ରାମ୍ୟ କୁଟୀରର ଚରଣ ସିକ୍ତ କରି, କ୍ଷୁଦ୍ର କ୍ଷୁଦ୍ର ଉପଳଗୁଡ଼ିକ ଉପରେ ଦ୍ରୁତ ପଦକ୍ଷେପ କରି ଏବଂ ବୃକ୍ଷଚ୍ୟୁତ ଫୁଲ ଓ ପତ୍ରଗୁଡ଼ିକୁ ତରଙ୍ଗେ ତରଙ୍ଗେ ଓଲଟ ପାଲଟ କରି ନିକଟସ୍ଥ ସରୋବରରେ ଲୋଟି ପଡୁଅଛି । ଦୂରବ୍ୟାପୀ, ନିସ୍ତରଙ୍ଗ ସରସୀ, ଲାଜକୁଳୀ ଉଷାର ରକ୍ତ ରାଗରେ, ସୂର୍ଯ୍ୟଙ୍କ ହେମମୟ କିରଣରେ, ସନ୍ଧ୍ୟାର ସ୍ତର-ବିନ୍ୟସ୍ତ ମେଘମାଳାର ପ୍ରତିବିମ୍ବରେ, ପୂର୍ଣ୍ଣିମାର ବିଗଳିତ ଜ୍ୟୋସ୍ନା-ଧାରାରେ ବିଭାସିତ ହୋଇ ଶୈଳଲକ୍ଷ୍ମୀର ବିମଳ ଦର୍ପଣ ସଦୃଶ ସମସ୍ତ ଦିନରାତି ହାସ୍ୟ କରୁଅଛି । ଘନ-ବୃକ୍ଷ ବେଷ୍ଟିତ ଅନ୍ଧକାର ଗ୍ରାମଟି ଶୈଳମାଳାର ବିଜନ କ୍ରୋଡ଼ରେ ଅନ୍ଧାରର ଅବଗୁଣ୍ଠନ ପିନ୍ଧି ପୃଥିବୀର କୋଳାହଳଠାରୁ ଏକାକୀ ଲୁଚି ରହିଛି । ଦୂରରେ ହରିତ୍ ଶସ୍ୟମୟ କ୍ଷେତ୍ରରେ ଗାଭୀ ଚରୁଛନ୍ତି, ଗ୍ରାମ୍ୟ ବାଳିକାମାନେ ସରସୀରୁ ଜଳ ତୋଳୁଛନ୍ତି, ଗ୍ରାମର ଅନ୍ଧାର କୁଞ୍ଜରେ ବସି ଅରଣ୍ୟର ମ୍ରିୟମାଣ କବି 'ବୋହୂ-କଥାକୁହ' ବିଷର୍ଣ୍ଣ ଗୀତ ଗାଉଛନ୍ତି । ସମୁଦାୟ ଗ୍ରାମଟି ସତେକି ଜଣେ କବିର ସ୍ୱପ୍ନ ।

ଏହି ଗ୍ରାମର ଦୁଇଟି ବାଳକ ବାଳିକାଙ୍କରଥିଲା ଅତିଶୟ ପ୍ରଣୟ । ଦୁହେଁ ହାତ ଧରାଧରି ହୋଇ ବକୁଳ କୁଞ୍ଜରେ ଦୁଇଟି ଅଞ୍ଜଳ ଭରି ଫୁଲ ତୋଳୁଥିଲେ, ଶୁକ୍ରତାରା ଆକାଶରେ ବୁଡ୍ଡୁଁ ବୁଡ୍ଡୁଁ, ଉଷାର ଜଳଦମାଳା ଲୋହିତ ହେଉ ହେଉଁଣୁ ସରସୀର ବକ୍ଷରେ ତରଙ୍ଗ ଖେଳାଇ ଛିନ୍ନ-କମଳ-ଯୁଗଳ ପରି ପାଖାପାଖି ସନ୍ତରଣ କରୁଥିଲେ । ନୀରବ ମଧ୍ୟାହ୍ନରେ ସ୍ନିଗ୍ଧ ତରୁ-ଛାୟାରେ ଶୈଳର ସର୍ବୋଚ୍ଚ ଶିଖରରେ ବସି ଷୋଡ଼ଶ ବର୍ଷୀୟ ଅମର ସିଂହ ଧୀର ମୃଦୁଳ ସ୍ୱରରେ ରାମାୟଣ ପାଠ କରୁଥିଲା, ଦୁର୍ଦ୍ଦାନ୍ତ ରାବଣ ଦ୍ୱାରା ସୀତାହରଣ ପାଠ କରି କ୍ରୋଧରେ ଜଳିଯାଉଥିଲା, ଆଉ ଦଶମ ବର୍ଷୀୟା କମଳା ଦେବୀ ତାହାର ମୁଖ-ସ୍ଥିର ହରିଣ ନେତ୍ର ଟେକି ନୀରବରେ ଶୁଣୁଥିଲା, ଅଶୋକ ବନରେ ସୀତାଙ୍କ ବିଳାପ-କାହାଣୀ ଶୁଣି ପକ୍ଷ୍ମ-ରେଖା ଅଶ୍ରୁ-ସଲିଳରେ ସିକ୍ତ କରୁଥିଲା । କ୍ରମେ ଗଗନର ବିଶାଳ ପ୍ରାଙ୍ଗଣରେ ତାରକାର ଦୀପ ଜଳିଲେ, ସନ୍ଧ୍ୟାର ଅନ୍ଧକାର ଅଞ୍ଚଳରେ ଜୁଳୁଜୁଳିଆ ପୋକ ଫୁଟି ଉଠିଲେ, ଦୁହେଁ ହାତ ଧରାଧରି ହୋଇ କୁଟୀରକୁ ଫେରିଆସୁଥିଲେ । କମଳା ଦେବୀ ବଡ଼ ଅଭିମାନିନୀ ଥିଲା, କେହି ତାହାକୁ କିଛି କହିଲେ ସେ ଅମର ସିଂହର ବକ୍ଷରେ ମୁଖ ଲୁଚାଇ କାନ୍ଦୁଥିଲା, ଅମର ତାହାକୁ ସାନ୍ତ୍ୱନା ଦେଲେ, ତାହାର ଅଶ୍ରୁଜଳ ପୋଛିଦେଲେ,ଆଦର କରି ତାହାର ଅଶ୍ରୁସିକ୍ତ କପୋଳ

ଚୁମ୍ବନ କଲେ ବାଳିକାର ସକଳ ଯନ୍ତ୍ରଣା ଲିଭିଯାଉଥିଲା; ପୃଥିବୀ ମଧ୍ୟରେ ତାହାର ଆଉ କେହି ନ ଥିଲେ; ଥିଲା କେବଳ ଜଣେ ବିଧବା ମାତା; ଆଉ ସ୍ନେହମୟ ଅମର ସିଂହ । ସେମାନେ ହିଁ ବାଳିକାଟିର ଅଭିମାନ, ସାନ୍ତ୍ୱନା ଓ କ୍ରୀଡାର ସ୍ଥଳ ଥିଲେ ।

ବାଳିକାର ପିତା ଗ୍ରାମ ମଧ୍ୟରେ ସମ୍ଭ୍ରାନ୍ତ ଲୋକ ଥିଲେ; ରାଜ୍ୟର ଉଚ୍ଚପଦସ୍ଥ କର୍ମଚାରୀ ବୋଲି ସମସ୍ତେ ତାହାଙ୍କୁ ମାନ୍ୟ କରୁଥିଲେ । ସମ୍ପଦର କୋଡ଼ରେ ଲାଳିତ ପାଳିତ ହୋଇ ଏବଂ ସମ୍ଭ୍ରମର ସୁଦୂର ଚନ୍ଦ୍ରାଲୋକରେ ଅବସ୍ଥାନ କରି କମଳା ଗ୍ରାମର ବାଳିକାମାନଙ୍କ ସହ କେବେ ମିଶୁ ନ ଥିଲା । ବାଲ୍ୟକାଳରୁ ତାହାର ପ୍ରିୟ ସଙ୍ଗୀ ଅମର ସିଂହ ସହିତ ଖେଳି ବୁଲୁଥିଲା । ଅମର ସିଂହ ସେନାପତି ଅଜିତ ସିଂହର ପୁତ୍ର, ଅର୍ଥ ନାହିଁ; କିନ୍ତୁ ଉଚ୍ଚ ବଂଶଜାତ, ଏଥି ସକାଶେ କମଳା ଓ ଅମରର ବିବାହର ସମ୍ବନ୍ଧ ହୋଇଅଛି । ଥରେ ମୋହନ ଲାଲ ନାମକ ଜଣେ ଧନୀ ପୁତ୍ର ସହିତ କମଳାର ବିବାହର ପ୍ରସ୍ତାବ ହୋଇଥିଲା, କିନ୍ତୁ କମଳାର ପିତା ତାହାର ଚରିତ୍ର ଭଲ ନ ଥିବାର ଜାଣି ସେଥିରେ ଏକମତ ହୋଇ ନ ଥିଲେ ।

କମଳାର ପିତାଙ୍କ ମୃତ୍ୟୁ ହେଲା । କ୍ରମେ ତାହାଙ୍କ ବିଷୟ ସମ୍ପତ୍ତି ଧୀରେ ଧୀରେ ନଷ୍ଟ ହୋଇଗଲା । ତାହାଙ୍କ ପ୍ରସ୍ତର ନିର୍ମିତ ଅଟ୍ଟାଳିକାଟି ଭାଙ୍ଗିଗଲା । ତାହାଙ୍କ ସମ୍ଭ୍ରମ ଅଳପେ ଅଳପେ ବିନିଷ୍ଟ ହେଲା ଏବଂ ତାହାଙ୍କ ରାଶି ରାଶି ବନ୍ଧୁ ଜଣ ଜଣ ହୋଇ ଅପସରିଗଲେ । ଅନ୍ୟଥା ବିଧବା ଜୀର୍ଣ୍ଣ ଅଟ୍ଟାଳିକା ତ୍ୟାଗ କରି ଗୋଟିଏ କ୍ଷୁଦ୍ର କୁଟୀରରେ ବାସ କଲା । ସମ୍ପଦର ସୁଖମୟ ସ୍ୱର୍ଗରୁ ଦାରୁଣ ଦାରିଦ୍ର୍ୟରେ ନିପତିତ ହୋଇ ବିଧବା ଅତିଶୟ କଷ୍ଟ ପାଉଥିଲା । ସମ୍ଭ୍ରମ ରକ୍ଷା କରିବାର ଉପାୟ ଦୂରେ ଥାଉ, ଜୀବନ ରକ୍ଷାର ବି କୌଣସି ସମ୍ବଳ ନାହିଁ । ଆଦରଣୀ କନ୍ୟାଟି କିପରି ଦାରିଦ୍ର୍ୟ-ଦୁଃଖ ସହ୍ୟ କରିବ ? ସ୍ନେହମୟୀ ମାତା ଭିକ୍ଷା କରି ସୁଦ୍ଧା କମଳାକୁ କୌଣସିମତେ ଦାରିଦ୍ର୍ୟର ରୌଦ୍ର ଭୋଗ କରିବାକୁ ଦେଲା ନାହିଁ ।

ଅମର ସହିତ କମଳାର ଶୀଘ୍ର ବିବାହ ହେବ, ବିବାହର ଆଉ ଦି' ସପ୍ତାହ ଅବଶିଷ୍ଟ ଅଛି । ଅମର ଗ୍ରାମର ରାସ୍ତାରେ ବୁଲୁ ବୁଲୁ କମଳାକୁ ତାହାର ଭବିଷ୍ୟତ ଜୀବନରକେତେ କଅଣ ସୁଖର କାହାଣୀ ଶୁଣାଉଥିଲା; ବେଶି ହେଲେ ଦୁହେଁ ସେହି ଶୈଳ-ଶିଖରରେ କେତେ ଖେଳ ଖେଳିବେ, ସେହି ସରସୀର ଜଳରେ କେତେ ପହଁରିବେ, ସେହି ବକୁଳ କୁଞ୍ଜରେ କେତେ ଫୁଲ ତୋଳିବେ, ତୁନିତାଳି ଗମ୍ଭୀର ଭାବରେ ତହିଁର ପରାମର୍ଶ କରୁଥିଲେ । ବାଳିକା କମଳା ଅମରର ତୁଣ୍ଡରୁ ସେମାନଙ୍କ ଭବିଷ୍ୟତ କ୍ରୀଡ଼ାର ଗପ ଶୁଣି ଆନନ୍ଦରେ ଉଚ୍ଛଫୁଲ୍ଲ ହୋଇ ବିହ୍ୱଳ ନେତ୍ରରେ ଅମରର ମୁଖକୁ ଅନାଇ ରହୁଥିଲା । ଏପରି ଭାବରେ ଯେତେବେଳେ ଏହି ଦୁଇଟି ବାଳକ ବାଳିକା କଳ୍ପନାର ଅସ୍ପଷ୍ଟ ଜ୍ୟୋତ୍ସ୍ନାମୟ ସ୍ୱର୍ଗରେ ଖେଳୁଥିଲେ ସେତେବେଳେ ରାଜଧାନୀରୁ ସମ୍ବାଦ ଆସିଲା ଯେ ରାଜ୍ୟର ସୀମାନ୍ତରେ ଲଢ଼େଇ ଆରମ୍ଭ ହୋଇଛି । ସେନାନାୟକ ଅଜିତ ସିଂହ ଯୁଦ୍ଧକୁ ଯିବେ ଏବଂ ଯୁଦ୍ଧଶିକ୍ଷା ଦେବାପାଇଁ ତାହାଙ୍କ ପୁଅ ଅମର ସିଂହକୁ ବି ସାଙ୍ଗରେ ନେବେ ।

ସନ୍ଧ୍ୟା ହୋଇଛି । ଶୈଳ-ଶିଖରର ବୃକ୍ଷ-ଛାୟାରେ ଅମର ଓ କମଳା ଛିଡ଼ାହୋଇଛନ୍ତି । ଅମର ସିଂହ କହିଲା, ''କମଳା ! ମୁଁ ତ ଚାଲିଲି, ଏବେ କାହାଠାରୁ ରାମାୟଣ ଶୁଣିବୁ ?'' ବାଳିକା ଛଳଛଳ ନେତ୍ରରେ ତା ମୁଖକୁ ଅନାଇ ରହିଲା । ''ଦେଖ୍ କମଳା, ଏହି ଅସ୍ତମାନ ସୂର୍ଯ୍ୟ ପୁଣି କାଲି ଉଠିବେ, କିନ୍ତୁ ତୋ କୁଟୀର-ଦ୍ୱାରରେ ମୁଁ ଆଉ ଆଘାତ କରିବାକୁ ଯିବି ନାହିଁ । ତେବେ କହ ତ ଦେଖ୍ ଆଉ କାହା ସହିତ ଖେଳିବୁ ?'' କମଳା କିଛି କହିଲା ନାହିଁ, ନୀରବରେ ଅନାଇ ରହିଲା । ଅମର କହିଲା -'ସଖି ! ଯଦି ତୋର ଅମର ଯୁଦ୍ଧକ୍ଷେତ୍ରରେ ମରିଯାଏ, ତାହାହେଲେ -। କମଳା ଦୁଇ ବାହୁରେ ଅମରର ବକ୍ଷ ଜାବୁଡ଼ିଧରି କାନ୍ଦିପକାଇଲା, କହିଲା ''ମୁଁ ଯେ ତୁମକୁ ଭଲପାଏ ଅମର, ତୁମେ ମରିବ କାହିଁକି ?'' ଅଶ୍ରୁ-ସଲିଳରେ ବାଳକର ନେତ୍ର ଭରିଗଲା । ତୁରିତେ ପୋଛିପକାଇ କହିଲା, ''କମଳା, ଆ, ଅନ୍ଧାର ହୋଇଆସୁଛି । ଆଜି ଏହି ଶେଷଥର ତୋତେ କୁଟୀରରେ ପହଞ୍ଚାଇ ଦିଏ ।'' ଦୁହେଁ ହାତ ଧରାଧରି ହୋଇ କୁଟୀର ଅଭିମୁଖେ ଚାଲିଲେ । ଗ୍ରାମର ବାଳିକାମାନେ ଜଳ ନେଇ ଗୀତ ଗାଇ ଗାଇ ସ୍ୱଗୃହକୁ ଫେରିଆସୁଥାଆନ୍ତି । ବନଶ୍ରେଣୀର ମଝିରେ ଅଲକ୍ଷିତ ଭାବରେ ଗୋଟାଏ ପରେ ଗୋଟାଏ ପାପିୟା ଗାଇ ଗାଇ ଅଧୀର ହେଉଛନ୍ତି, ଆକାଶମୟ ତାରକା ଫୁଟିଉଠିଲେ । ଅମର କାହିଁକି ତାହାକୁ ପରିତ୍ୟାଗ କରିବାକୁ ଯିବ । ଏହି ଅଭିମାନରେ କମଳା କୁଟୀରକୁ ଯାଇ ମାତାଙ୍କ ବକ୍ଷରେ ମୁଖ ଲୁଚାଇ କାନ୍ଦିବାକୁ ଲାଗିଲା । ଅମର ଅଶ୍ରୁ-ସଲିଳରେ ଶେଷ ବିଦାୟ ଗ୍ରହଣ କରି ଫେରିଆସିଲା ।

ଅମର ପିତାଙ୍କ ସହିତ ସେହି ରାତିରେ ଗ୍ରାମ ତ୍ୟାଗକରି ଚାଲିଗଲା । ଗ୍ରାମର ଶେଷ ପ୍ରାନ୍ତର ଶୈଳଶିଖର ଉପରକୁ ଉଠି ଥରେ ଫେରି ଚାହିଁ ଦେଖିଲା । ଶୈଳ-ଗ୍ରାମ ଜ୍ୟୋତ୍ସ୍ନାଲୋକରେ ଶୋଇଛି । ଚଞ୍ଚଳ ନିର୍ଝରିଣୀ ନାଚୁଅଛି । ଘୁମନ୍ତ ଗୋପାଳଙ୍କର ଗୀତର ଅସ୍ପଷ୍ଟ ସ୍ୱର, ଗ୍ରାମଶୈଳର ଶିଖରକୁ ଯାଇ ମିଶୁଅଛି । ଅମର ଦେଖିଲା, କମଳା ଦେବୀର ଲତାପତ୍ର ବେଷ୍ଟିତ କ୍ଷୁଦ୍ର କୁଟୀରଟି ଅସ୍ପଷ୍ଟ ଜ୍ୟୋତ୍ସ୍ନାରେ ଶୋଇଅଛି । ଭାବିଲା ସେହି କୁଟୀର ହୁଏତ ଏତିକିବେଳେ ଶୂନ୍ୟ-ହୃଦୟା ମର୍ମ-ପୀଡ଼ିତା ବାଳିକାଟି ଉପଧାନରେ କ୍ଷୁଦ୍ର ମୁଖଟି ଲୁଚାଇ ନିଦ୍ରାଶୂନ୍ୟ ନେତ୍ରରେ ମୋ ଲାଗି କାନ୍ଦୁଅଛି । ଅମରର ନେତ୍ର ଅଶ୍ରୁରେ ଭରିଗଲା । ଅଜିତ ସିଂହ କହିଲେ, ''ରାଜପୁତ-ବାଳକ ! ଯୁଦ୍ଧଯାତ୍ରା କାଳରେ କାନ୍ଦୁଅଛ !'' ଅମର ଅଶ୍ରୁ ପୋଛି ପକାଇଲା ।

ଶୀତକାଳ । ଦିବା ଅବସାନ ହୋଇ ଆସୁଅଛି । ଗାଢ଼ ଅନ୍ଧକାରମୟ ମେଘରାଶି ଉପତ୍ୟକା, ଶୈଳଶିଖର, କୁଟୀର, ବନ, ନିର୍ଝର, ହ୍ରଦ, ଶସ୍ୟକ୍ଷେତ୍ର ଏକାବେଳେ ଗ୍ରାସ କରିପକାଇଛି । ଅବିଶ୍ରାନ୍ତ ବରଫ ପଡୁଅଛି । ତରଳ ତୁଷାରରେ ସମଗ୍ର ଶୈଳ ଆଚ୍ଛନ୍ନ ହୋଇଅଛି । ପତ୍ରହୀନ ଶୀର୍ଣ୍ଣ ବୃକ୍ଷ ଗୁଡ଼ିକ ଶ୍ୱେତ ମସ୍ତକରେ ସ୍ତମ୍ଭିତ ଭାବରେ ଦଣ୍ଡାୟମାନ; ଦାରୁଣ ତୀବ୍ର ଶୀତରେ ହିମାଳୟଗିରି ବି ସଚେତ ଅବସନ୍ନ ହୋଇଯାଇଛି, ଏହି ଶୀତ-ସନ୍ଧ୍ୟାର ବିଷର୍ଣ୍ଣ ଅନ୍ଧକାର ମଧ୍ୟରେ, ଗାଢ଼ ବାଷ୍ପମୟ ସ୍ତମ୍ଭିତ ମେଘରାଶି ଭେଦ କରି

ଜଣେ ମ୍ଳାନ-ମୁଖଶ୍ରୀ ଛିନ୍ନବସନା ଦରିଦ୍ର ବାଳିକା ଅଶ୍ରୁମୟ ନେତ୍ରରେ ଶୈଳର ପଥ ଘାଟରେ ଭ୍ରମଣ କରୁଅଛି । ତୁଷାରରେ ପଦ-ତଳ ପ୍ରସ୍ତର ସଦୃଶ ଅଚଳ ହୋଇଯାଇଛି । ଶୀତରେ ସମସ୍ତ ଶରୀର କମ୍ପୁଅଛି, ମୁଖ ନୀଳବର୍ଣ୍ଣ, ପାର୍ଶ୍ୱଦେଇ ଜଣେ ଦି' ଜଣ ନୀରବ ପାନ୍ଥ ଚାଲିଯାଉଛନ୍ତି । ହତଭାଗିନୀ କମଳା କରୁଣ ନେତ୍ରରେ ବାରବାର ସେମାନଙ୍କ ମୁଖକୁ ଚାହୁଁଛି । କଅଣ କହିବାକୁ ଯାଇ କହୁନାହିଁ । ପୁଣି ଅଶ୍ରୁ-ସଲିଳରେ ଅଞ୍ଚଳ ସିକ୍ତ କରି ତୁଷାର ସ୍ତରରେ ପଦଚିହ୍ନ ଅଙ୍କିତ କରୁଅଛି । କୁଟୀରରେ ରୁଗ୍ଣା ମାତା ଅନାହାରରେ ଶଯ୍ୟାଗତ । ଦିନସାରା ବାଳିକା ମୁଠାଏ ବି ଆହାର କରିବାକୁ ପାଏ ନାହିଁ । ସକାଳୁ ସନ୍ଧ୍ୟାଯାଏ ରାସ୍ତାଘାଟରେ ଭ୍ରମଣ କରୁଅଛି । ସାହସ କରି ଭୀତିବିହ୍ୱଳାବାଳା କାହାରି ପାଖରୁ ଭିକ୍ଷା ମାଗିପାରେ ନାହିଁ । ବାଳିକା କେବେ ଭିକ୍ଷା କରିନାହିଁ । କିପରି ଭିକ୍ଷା କରିବାକୁ ହୁଏ କାହାକୁ କଅଣ କହିବାକୁ ହୁଏ ଜାଣେନା; ଆଲୁଳାୟିତ କୁନ୍ତଳ ରାଶି ମଧ୍ୟରେ ସେହି କ୍ଷୁଦ୍ର କରୁଣ ମୁଖଟି ଦେଖିଲେ, ଦାରୁଣ ଶୀତରେ କମ୍ପମାନ ତାହାର ସେହି କ୍ଷୁଦ୍ର ଦେହ ଖଣ୍ଡିକ ଦେଖିଲେ ପାଷାଣ ବି ବିଗଳିତ ହେଉଥିଲା । କ୍ରମେ ଅନ୍ଧକାର ଘନୀଭୂତ ହେଲା । ନିରାଶ ବାଳିକା ଭଗ୍ନ ହୃଦୟରେ ଶୂନ୍ୟ ଅଞ୍ଚଳରେ କୁଟୀରକୁ ଫେରିଯାଉଅଛି; କିନ୍ତୁ ଅଚଳ ପାଦ ଆଉ ଉଠେନା, ଅନାହାରରେ ଦୁର୍ବଳ, ପଥଶ୍ରମରେ କ୍ଳାନ୍ତ, ନିରାଶାରେ ମ୍ରିୟମାଣ, ଶୀତରେ ଆସନ୍ନ ବାଳିକା ଆଉ ଚାଲିପାରୁ ନାହିଁ । ଅବଶ ହୋଇ ପଥ-ପ୍ରାନ୍ତରେ ତୁଷାର ଶଯ୍ୟାରେ ଶୋଇପଡ଼ିଲା । ଶରୀର କ୍ରମେ ଅଧିକ ଅବସନ୍ନ ହେବାକୁ ଲାଗିଲା । ବାଳିକା ବୁଝିଲା କ୍ରମେ ସେ ଅବସନ୍ନ ହୋଇ ତୁଷାରରେ ଚାପା ପଡ଼ି ମରିବ । ମାଆକୁ ସ୍ମରଣ କରି କାନ୍ଦିପକାଇଛି ।, ହାତ ଯୋଡ଼ି କହିଲା "ମାଆ ଭଗବତୀ, ମୋତେ ମାରିପକାଅ ନାହିଁ, ମୋତେ ରକ୍ଷାକର, ମୁଁ ମରିଗଲେ ଯେ ମୋ ମାଆ କାନ୍ଦିବ, ମୋ ଅମର କାନ୍ଦିବ !" କ୍ରମେ ବାଳିକା ଅଚେତନ ହୋଇପଡ଼ିଲା । କମଳା ଆଲୁଳାୟିତ କୁନ୍ତଳରେ, ଶିଥିଳ ଅଞ୍ଚଳରେ ତୁଷାରରେ ଅର୍ଦ୍ଧମଗ୍ନା ହୋଇ ବୃକ୍ଷଚ୍ୟୁତ ମଳିନ ଫୁଲଟି ସଦୃଶ ପଥ ପ୍ରାନ୍ତରେ ପଡ଼ି ରହିଲା । ତୁଷାର ଉପରେ ତୁଷାରର କଣା ପଡ଼ୁଛି ଏବଂ ଚରଳୁଛି ଆଉ କ୍ରମେ ଜମିଯାଉଛି । ଏହି ଅନ୍ଧାର ରାତିରେ ଜଣେହେଲେ ପାନ୍ଥ ବାଟରେ ଯାଉନାହାନ୍ତି । ବୃଷ୍ଟି ପଡ଼ିବାକୁ ଲାଗିଲା, ବରଫ ଜମିବାକୁ ଲାଗିଲା, ବାଳିକା ଏକାକିନୀ ଶୈଳ-ପଥରେ ପଡ଼ି ରହିଲା ।

## ।। ଦ୍ୱିତୀୟ ପରିଚ୍ଛେଦ ।।

କମଳାର ମାତା ଭଗ୍ନ କୁଟୀରରେ ରୋଗଶଯ୍ୟାରେ ଶାୟିତ, ଜୀର୍ଣ୍ଣ ଗୃହ ଭେଦକରି ଶୀତର ବତାସ ତୀବ୍ର ବେଗରେ ଘରେ ପ୍ରବେଶ କରୁଅଛି । ବିଧବା ତୃଣଶଯ୍ୟାରେ ଶୋଇ ଥରି ଥରି କମ୍ପୁଅଛି; ଘର ଅନ୍ଧାର, ଦୀପଟିଏ ଜାଳିବାକୁ ଲୋକ ନାହିଁ । କମଳା ସକାଳୁ ଭିକ୍ଷା କରିବାକୁ ଯାଇଛି, ଏଯାଏ ଫେରିଆସି ନାହିଁ । ବ୍ୟାକୁଳ ବିଧବା ପ୍ରତ୍ୟେକ ପଦଶବ୍ଦରେ କମଳା ଆସୁଅଛି ବୋଲି ଚମକି ପଡ଼ୁଅଛି । କମଳାକୁ ଖୋଜିବା ଲାଗି ବିଧବା କେତେଥର ଉଠିବାକୁ ଚେଷ୍ଟା କରିଛି, କିନ୍ତୁ ପାରିନାହିଁ । କେତେ

କଅଣ ଆଶଙ୍କାରେ ଆକୁଳ ହୋଇ ମାତା ଦେବତାଙ୍କ ନିକଟରେ କାତର କ୍ରନ୍ଦନରେ ପ୍ରାର୍ଥନା କରିଛି । ଅଶ୍ରୁଜଳରେ କେତେଥର କହିଛି, ''ମୁଁ ହତଭାଗିନୀ, ମୋର ମରଣ ହେଲା ନାହିଁ କାହିଁକି ? କେବେ ଭିକ୍ଷା କରିବାକୁ ଜାଣେନା ଯେଉଁ ବାଳିକା, ତାହାକୁ ବି ଆଜି ଅନାଥିନୀ ପରି ଦୁଆରର ବାହାରେ ଠିଆ ହେବାକୁ ପଡ଼ିଲା ? କ୍ଷୁଦ୍ର ବାଳିକା ଅଧିକ ଦୂର ଚାଲିପାରେନା ସେ ଏହି ଅନ୍ଧକାରରେ, ତୁଷାରରେ, ବର୍ଷାରେ କେମିତି ବଞ୍ଚିବ ଉଠି ପାରେନ, ଅଥଚ କମଳାକୁ ଦେଖିପାରୁ ନାହିଁ । ବିଧବା ବକ୍ଷରେ କରାଘାତ କରି ଅଧୀର ଭାବରେ କାନ୍ଦିବାକୁ ଲାଗିଲା । ଜଣେ ଦି'ଜଣ ପଡ଼ିଶା ବିଧବାକୁ ଦେଖିବା ଲାଗି ଆସିଥିଲେ । ବିଧବା ସେମାନଙ୍କ ଚରଣ ଜାବୁଡ଼ି ଧରି ସଜଳ ନୟନରେ କାତିର ଭାବରେ ମିନତି କଲା, ''ମୋ ପଥହରା କମଳା କେଉଁଠି ଘୂରି ବୁଲୁଅଛି, ଥରେ ତାହାକୁ ଖୋଜିବାକୁ ଯାଅ ।'' ସେମାନେ କହିଲେ, ''ଏହି ତୁଷାରରେ ଅନ୍ଧାରରେ ଆମେ ଘରୁ ବାହାରକୁ ଯାଇ ପାରିବୁ ନାହିଁ ।'' ବିଧବା କାନ୍ଦି କାନ୍ଦି କହିଲା, ''ଥରେ ଯାଅ, ମୁଁ ଅନାଥ ଦରିଦ୍ର, ଅର୍ଥ ନାହିଁ, ତୁମମାନଙ୍କୁ କଅଣ ଦେବି କୁହ । କ୍ଷୁଦ୍ର ବାଳିକା, ସେ ପଥ ଚିହ୍ନି ନାହିଁ, ତାହାକୁ ମାତାର କୋଳକୁ ଆଣିଦିଅ, ଭଗବାନ ତୁମମାନଙ୍କର ମଙ୍ଗଳ କରିବେ ।'' କେହି ଶୁଣିଲେ ନାହିଁ । ସେହି ବର୍ଷା-ବିଜୁଳିରେ କିଏ ବାହାର ହେବ ? ସମସ୍ତେ ନିଜ ନିଜ ଘରକୁ ଫେରିଗଲେ । କ୍ରମେ ରାତି ବଢ଼ିବାକୁ ଲାଗିଲା, କାନ୍ଦି କାନ୍ଦି ଦୁର୍ବଳ ବିଧବା କ୍ଳାନ୍ତ ହୋଇଯାଇଛି । ନିର୍ଜୀବ ଭାବରେ ଶଯ୍ୟାରେ ପଡ଼ିରହିଛି । ଏପରି ସମୟରେ ବାହାରେ ପଦଶବ୍ଦ ଶୁଭିଲା । ବିଧବା ଚକିତ ନେତ୍ରରେ ଦୁଆର ଆଡ଼କୁ ଅନାଇ କ୍ଷୀଣ ସ୍ୱରରେ କହିଲା, ''କମଳା, ମାଆ, ଆସିଲୁ ?'' ଜଣେ ବାହାରୁ ରୁକ୍ଷ ସ୍ୱରରେ ପଚାରିଲା, ''ଘରେ କିଏ ଅଛ ?'' ଘର ଭିତରୁ କମଳାର ମାତା ଜବାବ ଦେଲା । ସେ ଶାଖା-ଦୀପ ହାତରେ ଧରି ଘରେ ପ୍ରବେଶ କଲା ଏବଂ କମଳାର ମାତାକୁ କଅଣ କହିଲା । ଶୁଣିବା ମାତ୍ରେ ବିଧବା ଚିତ୍କାର କରି ମୁର୍ଚ୍ଛିତ ହୋଇପଡ଼ିଲା ।

### ।। ତୃତୀୟ ପରିଚ୍ଛେଦ ।।

ଏଣେ ତୁଷାର-କ୍ଲିଷ୍ଟ କମଳା କ୍ରମେ କ୍ରମେ ଚେତନା ଲାଭ କଲା । ଆଖିମେଲି ଚାହିଁଲା । ଦେଖିଲା, ଗୋଟାଏ ପ୍ରକାଣ୍ଡ ଗୁହା । ଇତସ୍ତତଃ ବୃହତ୍ ଶିଳାଖଣ୍ଡ ବିକ୍ଷିପ୍ତ ହୋଇଅଛି । ଗାଢ଼ ଧୂମ ମେଘରେ ଗୁହା ପରିପୂର୍ଣ୍ଣ; ସେହି ମେଘରେ ଅନ୍ଧାର ଭେଦ କରି ଶାଖାଦୀପର ଆଲୋକ-ଦୀପ୍ତ କେତେଗୁଡ଼ିଏ କଠୋର ଶ୍ମଶ୍ରୁପୂର୍ଣ୍ଣ ମୁଖ କମଳାର ମୁଖକୁ ଅନାଇ ରହିଛି । ପ୍ରାଚୀରରେ କୁଠାର, କୃପାଣ ପ୍ରଭୃତି ନାନାବିଧ ଅସ୍ତ୍ର ଲମ୍ବିତ ରହିଛି । କେତେଗୁଡ଼ିଏ ସାମାନ୍ୟ ଗାର୍ହସ୍ଥ୍ୟ ଉପକରଣ ଇତସ୍ତତଃ ବିକ୍ଷିପ୍ତ । ବାଳିକା ସଭୟରେ ଚକ୍ଷୁ ନିମ୍ନୀଳିତ କଲା । ପୁଣି ଚକ୍ଷୁ ଖୋଲି ଚାହିଁଲା । ଜଣେ ତାହାକୁ ପଚାରିଲା, ''କିଏ ତୁମେ?'' ବାଳିକା ଜବାବ ଦେଇପାରିଲା ନାହିଁ । ବାଳିକାର ବାହୁ ଧରି ସବେଗେ ହଲାଇ ପୁଣି ପଚାରିଲା, ''କିଏ ତୁ?'' କମଳା ଭୀତ-କମ୍ପିତ ମୃଦୁ ସ୍ୱରରେ କହିଲା, ''ମୁଁ କମଳା !'' ସେ ମନେକରିଥିଲା ଏହି ଉତ୍ତରରେ ସେମାନେ ତାହାର ସମସ୍ତ ପରିଚୟ

ପାଇବେ । ଜଣେ ପଚାରିଲା, "ଆଜି ସନ୍ଧ୍ୟାରେ ଦୁର୍ଯ୍ୟୋଗ ସମୟରେ ବାଟରେ ଭ୍ରମଣ କରୁଥିଲୁ କାହିଁକି ?" ବାଳିକା ଆଉ ରହିପାରିଲା ନାହିଁ, କାନ୍ଦିପକାଇଲା । ଅଶ୍ରୁରୁଦ୍ଧ କଣ୍ଠରେ କହିଲା, "ଆଜି ମୋ ମାଆ ଦିନସାରା କିଛି ଖାଇ ପାରି ନାହିଁ ।" ସମସ୍ତେ ହସି ପକାଇଲେ । ସେମାନଙ୍କ ନିଷ୍ଠୁର ଅଟ୍ଟହାସ୍ୟରେ ଗୁହା ପ୍ରତିଧ୍ୱନିତ ହେଲା । ବାଳିକାର ମୁଖର କଥା ମୁଖରେ ରହିଗଲା । କମଳା ସଭୟରେ ଆଖି ମୁଦିଲା । ଦସ୍ୟୁମାନଙ୍କ ହାସ୍ୟ ବଜ୍ରଧ୍ୱନି ପରି ବାଳିକାର ବକ୍ଷରେ ଯାଇ ବାଜିଲା । ସେ ସଭୟରେ କାନ୍ଦି କାନ୍ଦି କହିଲା, "ମୋତେ ମୋ ମାଆ ପାଖକୁ ନେଇଯାଅ !" ପୁଣି ସମସ୍ତେ ମିଶି ହସିପକାଇଲେ । କ୍ରମେ ସେମାନେ କମଳାଠାରୁ ତାହାର ବାସସ୍ଥାନ, ପିତାମାତାଙ୍କ ନାମ ପ୍ରଭୃତି ଜାଣିପାରିଲେ । ଅବଶେଷରେ ଜଣେ କହିଲା, "ଆମେ ହେଉଛୁଁ ଦସ୍ୟୁ, ତୁ ଆମର ବନ୍ଦିନୀ, ତୋ ମାଆ ପାଖକୁ କହି ପଠାଉଛି, ଯଦି ସେ ନିର୍ଦ୍ଧାରିତ ଅର୍ଥ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ନଦିଏ ତାହାହେଲେ ତୋତେ ମାରିପକାଇବୁ ।" କମଳା କାନ୍ଦି କାନ୍ଦି କହିଲା, "ମୋ ମାଆ ଅର୍ଥ କେଉଁଠୁ ପାଇବ ? ସେ ତ ଅତି ଗରିବ; ତାହାର ଆଉ କେହି ନାହିଁ; ମୋତେ ମାରିଦିଅ ନାହିଁ । ମୁଁ କାହାରି କିଛି ଅନିଷ୍ଟ କରିନାହିଁ ।" ପୁଣି ସମସ୍ତେ ହସିପକାଇଲେ । କମଳାର ମାଆଠାକୁ ଜଣେ ଦୂତ ପ୍ରେରିତ ହେଲା । ସେ ଯାଇ କହିଲା, "ତୁମ କନ୍ୟା ବନ୍ଦିନୀ ହୋଇଛି, ଆଜିଠୁଁ ତୃତୀୟ ଦିବସରେ ମୁଁ ଆସିବି । ଯଦି ପାଞ୍ଚଶହ ମୁଦ୍ରା ଦେଇପାର ତାହାହେଲେ ତାହାକୁ ମୁକ୍ତ କରିଦେବୁ, ନୋହିଲେ ତୁମ କନ୍ୟା ନିଶ୍ଚିତ ହତ ହେବ ।" ଏହି ସମ୍ବାଦ ଶୁଣି କମଳାର ମାତା ମୂର୍ଚ୍ଛିତ ହୋଇଗଲା ।

ଦରିଦ୍ର ବିଧବା ଅର୍ଥ ପାଇବ କୋଉଠୁ ? ଗୋଟି ଗୋଟି କରି ସକଳ ଦ୍ରବ୍ୟ ବିକିଦେଲା । ବିବାହ ହେଲେ କମଳାକୁ ଦେବ ବୋଲି କେତେଗୁଡ଼ିଏ ଅଳଙ୍କାର ରଖିଥିଲା । ସେତକ ବିକିଦେଲା । ତଥାପି ନିର୍ଦ୍ଦିଷ୍ଟ ଅର୍ଥର ଚତୁର୍ଥାଂଶବି ମିଳିଲା ନାହିଁ । ଆଉ ତ କିଛି ନାହିଁ । ଅବଶେଷରେ ବକ୍ଷର ବସ୍ତ୍ର ମୋଚନ କଲା । ସେଠାରେ ତାହାର ମୃତ ସ୍ୱାମୀର ଗୋଟିଏ ମୁଦି ରଖିଦେଇଥିଲା; ମନେ କରିଥିଲା, ସୁଖ ହେଉ କି ଦୁଃଖ ହେଉ, ଦାରିଦ୍ର୍ୟ ବି ହେଉ, କେବେ ସେତା ତ୍ୟାଗ କରିବ ନାହିଁ । ଚିରଦିନ ଛାତି ଭିତରେ ଲୁଚାଇ ରଖିଥିବ; ମନେକରିଥିଲା ଏହି ମୁଦିଟି ତା ଚତାନଳର ସଙ୍ଗୀ ହେବ, କିନ୍ତୁ ଅଶ୍ରୁମୟ ନେତ୍ରରେ ତାହାକୁ ବି ବାହାର କଲା । ସେହି ମୁଦି ଟି ଯେବେ ବିକିବାକୁ ଚାହିଁଥିଲା, ସେତିକିବେଳେ ସେ ତା ଛାତିର ଖଣ୍ଡିଏ ଖଣ୍ଡିଏ ହାଡ଼ ବି ଭାଙ୍ଗିଦେଇ ପାରିଥାନ୍ତା, କିନ୍ତୁ କେହି ବି କିଣିବାକୁ ଚାହିଁଲେ ନାହିଁ । ଅବଶେଷରେ ବିଧବା ବାର ଦୁଆରରେ ଭିଖ ମାଗି ବୁଲିବାକୁ ଲାଗିଲା । ଦିନେ ଗଲା, ଦି'ଦିନ ଗଲା, ତିନି ଦିନ ବି ବିତିଯିବା ଉପରେ, କିନ୍ତୁ ନିର୍ଦ୍ଦିଷ୍ଟ ଅର୍ଥର ଅଧେ ସୁଦ୍ଧା ସଂଗୃହିତ ହୋଇପାରିଲା ନାହିଁ । ଆଜି ସେହି ଦସ୍ୟୁ ଆସିବ; ଯଦି ଆଜି ତା ହାତରେ ଅର୍ଥ ଦେଇ ନପାରେ, ତାହାହେଲେ ବିଧବାର ସଂସାରର ଏକମାତ୍ର ବନ୍ଧନ ଅଛି । ତାହା ବି ଛିନ୍ନ ହେବ । କିନ୍ତୁ ସେ ଅର୍ଥ ପାଇଲା ନାହିଁ । ଭିକ୍ଷା କଲା, ଦୁଆରେ ଦୁଆରେ ରୋଦନ କଲା । ସମ୍ପଦ ସମୟରେ ଯେଉଁମାନେ ତା ସ୍ୱାମୀର ସାମାନ୍ୟ

ଅନୁଚର ଥିଲେ, ସେମାନଙ୍କ ନିକଟରେ ବି କାନି ପାତିଲା, କିନ୍ତୁ ନିର୍ଦ୍ଦିଷ୍ଟ ଅର୍ଥର ଅଧେ ସୁଦ୍ଧା ସଂଗୃହିତ ହେଲା ନାହିଁ ।

ଭୟବିହ୍ୱଳା କମଳା ଗୁହାର କାରାଗାରରେ କାନ୍ଦି କାନ୍ଦି କାଠି ହେଲା । ସେ ଭାବୁଛି, ତାହାର ଅମର ସିଂହ ଥିଲେ କୌଣସି ଦୁର୍ଘଟଣା ଘଟି ନ ଥାଆନ୍ତା । ଯଦିଚ ଅମର ସିଂହ ବାଳକ ତଥାପି ସେ ଜାଣିଥିଲା, ଅମର ସିଂହ ହିଁ ସବୁକିଛି କରିପାରେ । ଦସ୍ୟୁମାନେ ବେଳେବେଳେ ତାହାକୁ ଭୟ ଦେଖାଇ ଯାଆନ୍ତି । ଦସ୍ୟମାନଙ୍କୁ ଦେଖିଲେ ହିଁ ସେ ଭୟରେ ପଣତରେ ମୁଖ ଘୋଡ଼ାଇପକାଏ । ଏହି ଅନ୍ଧକାର କାରାଗୃହରେ, ଏହି ନିଷ୍ଠୁର ଦସ୍ୟୁମାନଙ୍କ ମଧ୍ୟରେ ଜଣେ ଯୁବକ ଥିଲା ସେ କମଳା ପ୍ରତି ସେତେ କର୍କଶ ବ୍ୟବହାର କରେ ନାହିଁ । ସେ ବ୍ୟାକୁଳା ବାଳିକାକୁ ସ୍ନେହରେ କେତେ କଅଣ କଥା ପଚାରେ, କିନ୍ତୁ କମଳା ଭୟରେ କୌଣସି କଥାର ଜବାବ ବି ଦିଏ ନାହିଁ । ଦସ୍ୟୁ ତା ପାଖକୁ ଘୁଞ୍ଚିଆସିଲେ ସେ ଭୟରେ ଆଢ଼େଇ ଯାଏ । ସେହି ଯୁବକଟି ଦସ୍ୟୁପତିର ପୁତ୍ର । ସେ ଥରେ କମଳାକୁ ପଚାରିଥିଲା ଯେ ଦସ୍ୟୁ ସହି ବିବାହ କରିବାରେ ତାହାର କଅଣ କିଛି ଆପତ୍ତି ଅଛି ? ସେ ମଝିରେ ମଝିରେ ପ୍ରଲୋଭନ ଦେଖାଏ ଯେ, ଯଦି କମଳା ତାହାକୁ ବିଭାହୁଏ ତାହାହେଲେ ସେ ତାହାକୁ ମୃତ୍ୟୁମୁଖରୁ ରକ୍ଷା କରିବ । କିନ୍ତୁ କମଳା କୌଣସି କଥାର ବି ଜବାବ ଦିଏ ନାହିଁ । ଦିନେ ଗଲା, ଦି'ଦିନ ଗଲା, ବାଳିକା ସଭୟରେ ଦେଖିଲା, ଦସ୍ୟୁମାନେ ମଦପିଇ ଛୁରି ପଜାଉଛନ୍ତି ।

ଏଣେ ଦସ୍ୟୁମାନଙ୍କ ଦୂତ ବିଧବାର ଘରେ ଯାଇ ହାଜର ହେଲା । ବିଧବାକୁ ପଚାରିଲା ଅର୍ଥ କାହିଁ ? ବିଧବା ଭିକ୍ଷା କରି ଯେତିକି ଅର୍ଥ ସଂଗ୍ରହ କରିଥିଲା, ସବୁତକ ଦସ୍ୟୁର ପାଦତଳେ ରଖି କହିଲା, ''ମୋର ଆଉ କିଛି ନାହିଁ, ଯାହାକିଛି ଥିଲା ସବୁତକ ଦେଲି, ଏକ୍ଷଣି ତୁମମାନଙ୍କଠାରେ ଭିକ୍ଷା କରୁଛି, ମୋ କମଳାକୁ ଆଣିଦିଅ ।'' ଦସ୍ୟୁ ସେହି ମୁଦ୍ରାଗୁଡ଼ିକ ସକ୍ରୋଧରେ ଫିଙ୍ଗିଦେଇ କହିଲା, ''ମିଥ୍ୟା ପ୍ରତାରଣା କରି ତୁ ପାର ପାଇବୁ ନାହିଁ । ନିର୍ଦ୍ଦିଷ୍ଟ ଅର୍ଥ ନ ଦେଲେ ତୋ କନ୍ୟା ହତ ହେବ, ତେବେ ମୁଁ ଚାଲିଲି । ଆମ ଦଳପତିକୁ କହିଦିଏ ଯେ, ନିର୍ଦ୍ଦିଷ୍ଟ ଅର୍ଥ ପାଇବ ନାହିଁ । ତେଣୁ ଏକ୍ଷଣି ନର-ଶୋଣିତରେ ମହାକାଳୀଙ୍କ ପୂଜା କର ।'' ବିଧବା କେତେ ମିନତି କଲା, କେତେ କାନ୍ଦିଲା, କୌଣସିମତେ ଦସ୍ୟୁର ପାଷାଣ ହୃଦୟ ତରଳାଇ ପାରିଲା ନାହିଁ । ଦସ୍ୟୁ ଯିବାକୁ ବସିବାରୁ ସେ କହିଲା, ''ଯାଅ ନାହିଁ, ଆଉ ଟିକିଏ ଅପେକ୍ଷା କର, ମୁଁ ଆଉ ଥରେ ଚେଷ୍ଟାକରି ଦେଖେଁ ।'' ଏହା କହି ସେ ଘରୁ ବାହାରିଗଲା ।

## ।। ଚତୁର୍ଥ ପରିଚ୍ଛେଦ ।।

ମୋହନଲାଲ ସହିତ କମଳାର ବିବାହ ପ୍ରସ୍ତାବ ହୁଏ । କିନ୍ତୁ ତାହା ସମ୍ପନ୍ନ ନ ହେବାରୁ ମୋହନ ମନେ ମନେ କିଞ୍ଚିତ କ୍ଷୁବ୍ଧ ହୋଇଛି । କମଳାର ସକଳ ବୃତ୍ତାନ୍ତ ମୋହନଲାଲ ସକାଳେ ଶୁଣିବାକୁ ପାଇଥିଲା ଏବଂ ତତ୍‌କ୍ଷଣାତ୍ କୁଳ ପୁରୋହିତଙ୍କୁ ଡ଼କାଇ ଶୀଘ୍ର ବିବାହର ଉତ୍ତମ ଦିନ ଅଛି କି ନା ପଚାରିଲା ।

ଗ୍ରାମ ମଧ୍ୟରେ ମୋହନ ଭଳି ଧନୀ ଆଉକେହି ନଥିଲେ; ଆକୁଳ ହୋଇ ବିଧବା ଅବଶେଷରେ ତାହାର ଘରେ ଯାଇ ହାଜର ହେଲା । ମୋହନ ଉପହାସର ସ୍ୱରରେ ହସି ହସି କହିଲା, ''ଏଟା କି ଅପୂର୍ବ ଘଟଣା ! ଏତେଦିନ ପରେ ଦରିଦ୍ରର କୁଟୀରରେ ଯେ ପଦାର୍ପଣ ହେଲା ?''

ବିଧବା - ''ଉପହାସ କରନା, ମୁଁ ଯେ ଦରିଦ୍ର, ତୁମଠାକୁ ଭିକ୍ଷା ମାଗିବାକୁ ଆସିଛି ।''

ମୋହନ - ''କଅଣ ହୋଇଛି ?'' ବିଧବା ଆଦ୍ୟପ୍ରାନ୍ତ ସମସ୍ତ ବୃତ୍ତାନ୍ତ କହିଲା । ମୋହନ ପଚାରିଲା, ''ତାହାହେଲେ ମୋତେ କଅଣ କରିବାକୁ ହେବ ?''

ବିଧବା - ''କମଳାର ପ୍ରାଣ ରକ୍ଷା କରିବାକୁ ହେବ ।''

ମୋହନ - ''କାହିଁକି, ଅମର ସିଂହ ଏଠି ନାହିଁ? 'ବିଧବା ଉପହାସ ବୁଝିପାରିଲା, କହିଲା, ''ମୋହନ ଯଦି ବାସସ୍ଥାନ ଅଭାବରୁ ମୋତେ ବଣରେ ଭ୍ରମଣ କରିବାକୁ ହୋଇଥାଆନ୍ତା, ଯଦି ଅନାହାରରେ କ୍ଷୁଧାର ତାଡ଼ନାରେ ପାଗଳ ହୋଇ ମରିଥାଆନ୍ତି. ତଥାପୀ ତୁମ ନିକଟରେ ଖଣ୍ଡିଏ ତୃଣ ବି ପ୍ରାର୍ଥନା କରି ନ ଥାଆନ୍ତି । କିନ୍ତୁ ଆଜି ଯଦି ବିଧବାର ଏକମାତ୍ର ଭିକ୍ଷା ପୂର୍ଣ୍ଣ ନକର, ତାହାହେଲେ ତୁମ ନିଷ୍ଠୁରତା ଚିରଦିନ ମନେରହିବ ।''

ମୋହନ - ''ଆ, ତୋତେ ଗୋଟିଏ କଥା କହେ ! କମଳା ଦେଖିବାକୁ କିଛି ମନ୍ଦ ନୁହେ, ଆଉ ତାହାକୁ ଯେ ମୋର ପସନ୍ଦ ହୋଇନାହିଁ, ଏମିତି ବି ନୁହେଁ । ତେବେ ତାହା ସହିତ ମୋ ବିବାହର ତ କୌଣସି ଆପତ୍ତି ଦେଖୁ ନାହିଁ । ତୁମ ପାଖରେ ଲୁଚାଇ କଅଣ କରିବି, ବିନା କାରଣରେ ଭିକ୍ଷା ଦେଲାଭଳି ଅବସ୍ଥା ମୋର ନୁହେଁ ।''

ବିଧବା - ''ଆଗରୁ ଯେ ଅମର ସହିତ ତାହାର ବିବାହର ସମ୍ବନ୍ଧ ହୋଇଯାଇଛି ।'' ମୋହନ କିଛି ଜବାବ ନଦେଇ ହିସାବ ଖାତା ଖୋଲି ଲେଖିବାକୁ ବସିଲା । ସତେକି ଘରେ କେହି ନାହିଁ, କି କାହା ସହିତ କିଛି କଥା ହୋଇ ନାହିଁ । ଏଣେ ବେଳ ଗଡ଼ିଯାଉଛି । ଦସ୍ୟୁ ଅଛି କି ଗଲାଣି ଠିକ୍ ନାହିଁ । ବିଧବା କାନ୍ଦିକାନ୍ଦି କହିଲା, ''ମୋହନ, ମୋତେ ଆଉ ଯନ୍ତ୍ରଣା ଦିଅନା, ସମୟ ଅତୀତ ହେଉଅଛି ।''

ମୋହନ - ''ଉହୁ, କାମଟା ସାରିଦିଏ ।'' ଅବଶେଷରେ ଯଦି ବିଧବା ଏହି ବିବାହର ପ୍ରସ୍ତାବରେ ସମ୍ମତ ହୋଇ ନ ଥାଆନ୍ତା, ତାହାହେଲେ ଦିନସାରା କାମ ସରିଥାଆନ୍ତା କି ନା ସନ୍ଦେହଜନକ । ବିଧବା ମୋହନଲାଲ ନିକଟରୁ ଅର୍ଥ ନେଇ ଦସ୍ୟୁକୁ ଦେଲା, ସେ ଚାଲିଗଲା । ସେହି ଦିନ ହିଁ ଭୟରେ ଆଶଙ୍କାରେ ତ୍ରସ୍ତା ହରିଣୀଟି ସଦୃଶ ବିହ୍ୱଳା ବାଳିକା ମାତାର କୋଳକୁ ଫେରିଆସିଲା ଏବଂ ତାହାର ବାହୁ ପାଶରେ ମୁଖଟି ଲୁଚାଇ ରଖି ଢ଼େର ବେଳଯାଏ କାନ୍ଦି କାନ୍ଦି ମନର ଆବେଗ ଶାନ୍ତ କଲା । କିନ୍ତୁ ଅନାଥିନୀ ବାଳିକା ଜଣେ ଦସ୍ୟୁର ହାତରୁ ଆଉ ଜଣେ ଦସ୍ୟୁର ହାତରେ ପଡ଼ିଲା ।

କେତେ ବରଷ ଗତ ହୋଇଗଲା, ଯୁଦ୍ଧର ଅଗ୍ନି ନିର୍ବାପିତ ହୋଇଛି । ସୈନିକମାନେ

ଦେଶକୁ ଫେରିଆସିଛନ୍ତି ଏବଂ ଅସ୍ତ୍ର ପରିତ୍ୟାଗ କରି ଏକ୍ଷଣି ଭୂମି କର୍ଷଣ କରୁଛନ୍ତି । ବିଧବା ସମ୍ବାଦ ପାଇଲା ଯେ, ଅଜିତ ସିଂହ ନିହତ ଏବଂ ଅମର କାରାରୁଦ୍ଧ ହୋଇଛି । କିନ୍ତୁ ସେ ତା କନ୍ୟାକୁ ଏ ସମ୍ବାଦ ଶୁଣାଇ ନାହିଁ ।

ମୋହନ ସହିତ ବାଳିକାର ବିବାହ ହୋଇଗଲା । ମୋହନର କ୍ରୋଧ ତିଳେମାତ୍ର ନିବୃତ୍ତ ହେଲା ନାହିଁ । ତାହର ପ୍ରତିହିଂସା ପ୍ରବୃତ୍ତି ବିବାହ କରି ସୁଦ୍ଧା ତୃପ୍ତ ହେଲା ନାହିଁ । ସେ ନିର୍ଦ୍ଦୋଷ ଅବଳା ବାଳା ପ୍ରତି ଅନର୍ଥକ ପୀଡ଼ନ କରୁଥାଏ; କମଳା ମାତୃକ୍ରୋଡ଼ର ସ୍ନିଗ୍ଧ-ସ୍ନେହ ଛାୟାରୁ ଏହି ନିଷ୍ଠୁର କାରାଗୃହକୁ ଆସି ଅତ୍ୟନ୍ତ କଷ୍ଟ ପାଉଅଛି । ଅଭାଗିନୀ କାନ୍ଦି ସୁଦ୍ଧା ପାରେନା । ବିନ୍ଦୁ ମାତ୍ର ଅଶ୍ରୁ ତା ନେତ୍ରରେ ଦେଖାଦେଲେ ମୋହନର ଭର୍ତ୍ସନାର ଭୟରେ ତ୍ରସ୍ତ ହୋଇ ପୋଛିପକାଏ ।

## ।। ପଞ୍ଚମ ପରିଚ୍ଛେଦ ।।

ଶୈଳ-ଶିଖର ନିଷ୍କଳଙ୍କ ତୁଷାର-ଦର୍ପଣ ଉପରେ ରକ୍ତିମ ମେଘମାଳା ସ୍ତରେ ସ୍ତରେ ସଜ୍ଜିତ ହେଲା । ଘୁମନ୍ତ ବିଧବା ଦରଜାରେ ଆଘାତ ଶୁଣି ଉଠି ପଡ଼ିଲା । ଦୁଆର ଖୋଲି ଦେଖିଲା, ସୈନିକ ବେଶରେ ଅମର ସିଂହ ଛିଡ଼ାହୋଇଛି । ବିଧବା କିଛି କହିପାରିଲା ନାହିଁ, ଠିଆହୋଇ ରହିଲା । ଅମର ତରବରରେ ପଚାରିଲା, ''କମଳା, କମଳା କାହିଁ ?'' ଶୁଣିଲା, ସେ ସ୍ୱାମୀର ଆଳୟରେ । ସେ କ୍ଷଣେ ସ୍ତମ୍ଭିତ ହୋଇ ରହିଲା । ସେ କେତେ କଅଣ ଆଶା କରିଥିଲା, ଭାବିଥିଲା କେତେଦିନ ପରେ ଦେଶକୁ ଫେରିଯାଉଛି । ଯୁଦ୍ଧର ଉନ୍ମତ୍ତ ଝଡ଼ଠାରୁ ପ୍ରଣୟର ଶାନ୍ତିମୟ ସ୍ନିଗ୍ଧ ନୀଡ଼ରେ ଶୋଇବାକୁ ଯାଉଛି; ଯେତେବେଳେ ସେ ଅତର୍କିତ ଦୁଆରରେ ଠିଆହେବ, ସେତେବେଳେ ହର୍ଷବିହ୍ୱଳା କମଳା ଧାଇଁଆସି ତାହାର ବକ୍ଷକୁ କୁଦିପଡ଼ିବ । ବାଲ୍ୟକାଳର ସୁଖମୟ ସ୍ଥାନ ସେହି ଶୈଳଶିଖର ଉପରେ ବସି କମଳାକୁ ଯୁଦ୍ଧ-ଗୌରବର କଥା ଶୁଣାଇବ । ଅବଶେଷରେ କମଳା ସହିତ ବିବାହ-ସୂତ୍ରରେ ଆବଦ୍ଧ ହୋଇ ପ୍ରଣୟର କୁସୁମ-କୁଞ୍ଜରେ ସମସ୍ତ ଜୀବନ ସୁଖର ସ୍ୱପ୍ନରେ କଟାଇବ । ଏପରି ସୁଖର କଳ୍ପନା ଉପରେ ଯେଉଁ କଠୋର ବଜ୍ର ପଡ଼ିଲା, ସେଥିରେ ସେ ଦାରୁଣ ଅଭିଭୂତ ହେଲା, କିନ୍ତୁ ତାହାର ମନରେ ଯେତେ ଖୋଳତାଡ଼ ହୋଇଥିଲା, ପ୍ରଶାନ୍ତ ମୁଖଶ୍ରୀରେ ଗୋଟିଏ - ମାତ୍ର ରେଖା ବି ପଡ଼ିଲା ନାହିଁ ।

ମୋହନ କମଳାକୁ ତାହାର ମାତୃ-ଆଳୟରେ ରଖି ବିଦେଶ ଚାଲିଗଲା । ପଞ୍ଚଦଶ ବରଷ-ବୟସରେ କମଳା-ପୁଷ୍ପକଳିକାଟି ଫୁଟି ଉଠିଲା । ଇତି ମଧ୍ୟରେ କମଳା ଦିନେ ବକୁଳ ବନରେ ମାଳା ଗୁନ୍ଥିବାକୁ ଯାଇଥିଲା, କିନ୍ତୁ ପାରିଲା ନାହିଁ । ଦୂରରୁ ଶୂନ୍ୟ ମନରେ ଫେରିଆସିଥିଲା । ଆଉ ଦିନେ ସେ ବାଲ୍ୟକାଳର ଖେଳଣାଗୁଡ଼ିକ ବାହାର କରିଥିଲା, ଆଉ ଖେଳିପାରିଲା ନାହିଁ । ନିରାଶାର ନିଃଶ୍ୱାସ ପକାଇ ସେଗୁଡ଼ିକ ଗୋଟାଇ ରଖିଲା; ଅବଶ୍ୟ ଭାବିଥିଲା ଯେ, ଯଦି ଅମର ଫେରିଆସେ ତାହାହେଲେ ପୁଣି ଦୁହେଁ ମାଳ

ଗୁଛିବେ । ପୁଣି ଦି'ଜଣ ଖେଳିବେ । କେତେଦିନ ତାହାର ବାଲ୍ୟ-ସଖା ଅମରକୁ ସେ ଦେଖିବାକୁ ପାଉନାହିଁ । ମର୍ମପୀଡ଼ିତା କମଳା ବାର ବାର ଯନ୍ତ୍ରଣାରେ ଅସ୍ଥିର ହେଉଥିଲା । ଦିନେ ଦିନେ ରାତିରେ ଘରେ ସେ କାହାକୁ ଦେଖିପାରୁ ନଥିଲା । କମଳା କେଉଁଠି ହଜିଯାଇଛି, ଖୋଜି ଖୋଜି ଅବଶେଷରେ ତାହାର ବାଲ୍ୟର କ୍ରୀଡ଼ାସ୍ଥଳ ସେହି ଶୈଳଶିଖର ଉପରକୁ ଯାଇ ଦେଖେ । ମ୍ଳାନବଦନା ବାଳିକା ଅସଂଖ୍ୟ ତାରାଖଚିତ ଅନନ୍ତ ଆକାଶ ଆଡ଼େ ଅନାଇ ଆଲୁଳାୟିତ କେଶରେ ଶୋଇରହିଛି ।

କମଳା ମାତା ଲାଗି, ଅମର ଲାଗି କାନ୍ଦୁଥାଏ ବୋଲି ମୋହନ ଖୁବ୍ ରୁଷ୍ଟ ହୋଇଥିଲା ଏବଂ ତାହାକୁ ମାତୃ-ଆଳୟକୁ ପଠାଇ ଭାବିଥିଲା ଯେ, କେତେଦିନ ଅର୍ଥାଭାବରେ ସେ କଷ୍ଟ ପାଉ । ତା'ପରେ ଦେଖିବ କିଏ କାହା ଲାଗି କାନ୍ଦିପାରେ ।

କମଳା ମାତୃଭବନରେ ଲୁଚାଇ କାନ୍ଦେ । ନିଶୀଥ ବାୟୁରେ ତାହାର କେତେ ବିଷାଦର ନିଃଶ୍ୱାସ ମିଶିଯାଇଛି । ବିଜନ-ଶଯ୍ୟାରେ ସେ ଯେ କେତେ ଅଶ୍ରୁବାରି ମିଶାଇଛି, ତାହାର ମାତା ଦିନେ ହେଲେ ତାହା ଜାଣିପାରେ ନାହିଁ । ଦିନେ କମଳା ହଠାତ୍ ଶୁଣିଲା ତାହାର ଅମର ଦେଶକୁ ଫେରିଆସିଛି । ତାହାର କେତେଦିନର କେତେ କଅଣ ଭାବ ଉଚ୍ଛୁଳିଲା । ଅମରସିଂହର ବାଲ୍ୟକାଳର ମୁଖଟି ମନେପଡ଼ିଲା । ଦାରୁଣ ଯନ୍ତ୍ରଣାରେ କମଳା କେତେ ସମୟ କାନ୍ଦିଲା । ଅବଶେଷରେ ଅମର ସହି ସାକ୍ଷାତ କରିବା ସକାଶେ ସେ ବାହାରିଲା ।

ସେହି ଶୈଳଶିଖର ଉପରେ, ସେହି ବକୁଳ ତରୁଛାୟାରେ ମର୍ମାହତ ଅମର ବସିରହିଛି । ଗୋଟି ଗୋଟି କରି ବାଲ୍ୟକାଳର କଥା ମନେ ପଡ଼ିବାକୁ ଲାଗିଲା । କେତେ ଜ୍ୟୋସ୍ନା ରାତି, କେତେ ଅନ୍ଧକାର, ସନ୍ଧ୍ୟା କେତେ ବିମଳ ଉଷା ଅସ୍ପଷ୍ଟ ସ୍ୱପ୍ନ ଭଳି ତା' ମନରେ ଗୋଟି ଗୋଟି ହୋଇ ଜାଗ୍ରତ ହେଲା । ସେହି ବାଲ୍ୟକାଳ ସହିତ ତା ଭବିଷ୍ୟତ ଜୀବନର ଅନ୍ଧକାରମୟ ମରୁଭୂମି ତୁଳନା କରି ଦେଖିଲା, ସଙ୍ଗୀ ନାହିଁ, ସହାୟ ନାହିଁ, ଆଶ୍ରୟ ନାହିଁ । କେହିଆସି ପଚାରିବେ ନାହିଁ । କେହି ତା ମର୍ମର ଦୁଃଖ ଶୁଣି ମମତା ପ୍ରକାଶ କରିବ ନାହିଁ । ଅନନ୍ତ ଆକାଶରେ କକ୍ଷଚ୍ଛିନ୍ନ ଜ୍ୱଳନ୍ତ ଧୂମକେତୁ ସଦୃଶ, ତରଙ୍ଗାକୁଳ ଅସୀମ ସମୁଦ୍ର ମଧ୍ୟରେ ଝଟିକାତଡ଼ିତ ଗୋଟିଏ ଭଗ୍ନ ତରୀ ସଦୃଶ । ଏକାକୀ ନୀରବ ସଂସାରରେ ଉଦାସ ହୋଇ ବୁଲିବ ।

କ୍ରମେ ଦୂର ଗ୍ରାମର କୋଳାହଳର ଅସ୍ପଷ୍ଟ ଧ୍ୱନି ଥମିଗଲା, ନିଶୀଥର ବାୟୁ ଅନ୍ଧାର ବକୁଳ କୁଞ୍ଜର ପତ୍ର ମର୍ମରିତ କରି ବିଷାଦର ଗମ୍ଭୀର ଗୀତ ଗାଇଲା । ଅମର ଗାଢ଼ ଅନ୍ଧକାରରେ ଶୈଳର ସମୁଚ୍ଚ ଶିଖରରେ ଏକାକୀ ବସି ଦୂର-ନିର୍ଝରର ମୃଦୁ ବିଷର୍ଣ୍ଣ ଧ୍ୱନି, ନିରାଶ ହୃଦୟର ଦୀର୍ଘ ନିଃଶ୍ୱାସ ପରି ସମୀରଣର ହୁ ହୁ ଶବ୍ଦ ଏବଂ ନିଶୀଥର ମର୍ମଭେଦୀ ଏକ ତାନବାହୀ ଯେଉଁ ଗମ୍ଭୀର ଧ୍ୱନିଟିଏ ଅଛି ତାହା ହିଁ ଶୁଣୁଥିଲା । ସେ ଦେଖୁଥିଲା, ଅନ୍ଧକାର ସମୁଦ୍ର ତଳେ ସମୁଦାୟ ଜଗତ୍ ବୁଡ଼ିଯାଇଛି । ଦୂରସ୍ଥ ଶ୍ମଶାନ କ୍ଷେତ୍ରରେ ଗୋଟିଏ ଦୁଇଟି ଚିତାନଳ ଜଳୁଛି । ଦିଗନ୍ତରୁ ଦିଗନ୍ତ ପର୍ଯ୍ୟନ୍ତ ନୀରନ୍ଧ୍ର ସ୍ତମ୍ଭିତ ମେଘରେ

ଆକାଶ ଅନ୍ଧକାର । ସହସା ଶୁଣିଲା, ଉଚ୍ଛ୍ୱସିତ ସ୍ୱରରେ କିଏ କହିଲା ''ଭାଇ ଅମର'' - ଏହି ଅମୃତମୟ, ସ୍ନେହମୟ, ସ୍ୱପ୍ନମୟ ସ୍ୱର ଶୁଣି ତାହାର ସ୍ମୃତିରେ ସାଗର ଆଲୋଡ଼ିତ ହେଲା । ବୁଲିପଡ଼ି ଦେଖିଲା, କମଳା ମୁହୂର୍ତ୍ତକ ଭିତରେ ନିକଟକୁ ଯାଇ ବାହୁପାଶରେ ତାହାର ଗଳାଦେଶ ବେଷ୍ଟନ କରି କାନ୍ଧରେ ମଥା ରଖି କହିଲା, ''ଭାଇ ଅମର'' - ଅଟଳ ହୃଦୟ ଅମର ବି ଅନ୍ଧକାରରେ ଅଶ୍ରୁ ବିସର୍ଜନ କଲା । ପୁଣି ସହସା ଚକିତେ ଦୂରକୁ ଘୁଞ୍ଚିଗଲା । କମଳା ଅମରକୁ କେତେ କଅଣ କଥା କହିଲା । ଅମର କମଳାକୁ ଗୋଟିଏ ଦୁଇଟା ଉତ୍ତର ଦେଲା । ସରଳା ବାଳିକା ଆସିବା ସମୟରେ ଯେପରି ଉତ୍‌ଫୁଲ୍ଲ ହୃଦୟରେ ହସି ହସି ଆସିଥିଲା, ଗଲାବେଳେ ସେପରି ମ୍ରିୟମାଣ ହୋଇ କାନ୍ଦି କାନ୍ଦି ଚାଲିଗଲା । କମଳା ଭାବିଥିଲା ସେହି ପିଲାବେଳର ଅମର ଫେରିଆସିଛି, ଆଉ ମୁଁ ସେହି ପିଲାବେଳର କମଳା, କାଲିଠୁଁ ପୁଣି ତା' ସହିତ ଖେଳିବାକୁ ଆରମ୍ଭ କରିବି । ଯଦିଚ ଅମର ଅନ୍ତରର ଗଭୀର ତଳେ ସାଂଘାତିକ ଆହତ ହୋଇଥିଲା, ତଥାପି ସେ କମଳା ଉପରେ ଆଦୌ କ୍ରୁଦ୍ଧ ହେଲା ନାହିଁ ବା ଅଭିମାନ କଲା ନାହିଁ । ତାହାରି ଯୋଗୁଁ ବିବାହିତା ବାଳିକାର କର୍ତ୍ତବ୍ୟ କର୍ମରେ ବାଧା ନ ଘଟୁ - ଏଥିପାଇଁ ସେ ତା' ପରଦିନ କୁଆଡ଼େ ଯେ ଚାଲିଗଲା ତାହା କେହି ଠଉରାଇ ପାରିଲେ ନାହିଁ ।

ବାଳିକାର ସୁକୁମାର ହୃଦୟରେ ଦାରୁଣ ବଜ୍ର ପଡ଼ିଲା; ଅଭିମାନୀ କେତେଦିନ ହେଲା ଭାବିଚି ଯେ, ଏତେଦିନ ପରେ ସେ ବାଲ୍ୟସଖା ଅମର ପାଖକୁ ଧାଇଁଗଲା, ଅମର କାହିଁକି ବା ତାହାକୁ ଉପେକ୍ଷା କଲା ? ସେ କିଛି ଭାବିପାରିଲା ନାହିଁ । ଦିନେ ତାହାର ମାତାକୁ ଏହି କଥା ପଚାରିଥିଲା । ମାତା ତାହାକୁ ବୁଝାଇଦେଇଥିଲା ଯେ, କେତେଦିନ ରାଜସଭାର ଆଡ଼ମ୍ବରାଣି ମଧ୍ୟରେ ରହି ସେନାପତି ଅମର ସିଂହ ପର୍ଣ୍ଣକୁଟୀରବାସିନୀ ଭିଖାରୁଣୀ କ୍ଷୁଦ୍ର ବାଳିକାଟିକୁ ଭୁଲିଯିବାରେ ଅସମ୍ଭବ କଅଣ ଅଛି ? ଏହି କଥାରେ ଦରିଦ୍ର ବାଳିକାର ଅନ୍ତରତମ ଦେଶରେ ଶେଳ ବିନ୍ଧିଥିଲା । ଅମର ସିଂହ ତା ପ୍ରତି ନିଷ୍ଠୁର ଆଚରଣ କଲା ବୋଲି ମନେକରି କମଳା କଷ୍ଟ ପାଇଲା ନାହିଁ । ହତଭାଗିନୀ ଭାବିଲା - ମୁଁ ଦରିଦ୍ର, ମୋର କିଛି ନାହିଁ । ମୋର କେହି ବି ନାହିଁ । ମୁଁ ବୁଦ୍ଧିହୀନା କ୍ଷୁଦ୍ର ବାଳିକା । ତାହାଙ୍କ ଚରଣ-ରେଣୁକୁ ବି ଯୋଗ୍ୟ ନୁହେ, ତେବେ ତାହାଙ୍କୁ ଭାଇ ବୋଲି ଡ଼ାକିବି କେଉଁ ଅଧିକାରରେ, ତାହାଙ୍କୁ ଭଲପାଇବି କେଉଁ ଅଧିକାରରେ, ମୁଁ ଦରିଦ୍ର କମଳା । ମୁଁ କିଏ ଯେ ତାହାଙ୍କ ସ୍ନେହ ପ୍ରାର୍ଥନା କରିବି । ରାତି ସାରା କାନ୍ଦି କାଟିଲା, ପ୍ରଭାତ ହେଲାକ୍ଷଣି ସେହ ଶୈଳ-ଶିଖରକୁ ଉଠି ମ୍ରିୟମାଣ ବାଳିକା କେତେ କଅଣ ଭାବିବାକୁ ଲାଗିଲା । ତା' ଅନ୍ତରର ନିଭୃତ ତଳେ ଯେଉଁ ବାଣ ବିଦ୍ଧ ହୋଇଥିଲା ଯଦିଚ ସେ ତାହାର ଅନ୍ତରରେ ଲୁଚାଇ ରଖିଥିଲା, ପୃଥିବୀର କାହାକୁ ବି ଦେଖାଇ ନାହିଁ । ତଥାପି ସେହି ଅନ୍ତରରେ ଲୁକ୍କାୟିତ ବାଣ ଧୀରେ ଧୀରେ ତାହାର ହୃଦୟର ଶୋଣିତ କ୍ଷୟ କରିବାକୁ ଲାଗିଲା । ବାଳିକା ଆଉ କାହା ସହିତ କଥାହେଲା ନାହିଁ । ମଉନ ହୋଇ ସାରା ଦିନରାତି ଭାବୁଥିଲା । କାହା ସହି ମିଶୁ ନଥିଲା, କାନ୍ଦୁ ନଥିଲା; ଦିନେ ଦିନେ

ଦେଖାଯାଉଥିଲା - ପଥପ୍ରାନ୍ତର ବୃକ୍ଷ ତଳେ ମଳିନ ଛିନ୍ନ ପଣତରେ ମୁଖ ଢ଼ାଙ୍କି ଦୀନହୀନା କମଳା ବସିରହିଛି । ବାଳିକା କ୍ରମେ ଦୁର୍ବଳ କ୍ଷୀଣ ହେବାକୁ ଲାଗିଲା, ଦୂର ଶୈଳ-ଶିଖର ଉପରେ ବକୁଳ ପତ୍ର ପବନରେ କମ୍ପୁଅଛି । ଦେଖୁଥିଲା, ସନ୍ଧ୍ୟାବେଳେ ଗୋ-ପାଳକମାନେ ଉଦାସ ଭାବୋଦ୍ଦୀପକ ସ୍ୱରରେ ମୃଦୁ ମୃଦୁ ଗୀତ ବୋଲି ବୋଲି ଘରକୁ ଫେରିଆସୁଛନ୍ତି ।

ବିଧବା ବହୁ ଚେଷ୍ଟା କଲେ ସୁଦ୍ଧା ବାଳିକାର କଷ୍ଟର କାରଣ ବୁଝିପାରିଲା ନାହିଁ ଏବଂ ତାହାର ରୋଗର ପ୍ରତିକାର ବି କରିପାରିଲା ନାହିଁ । କମଳା ନିଜେ ବୁଝିପାରିଥିଲା ଯେ ସେ ମୃତ୍ୟୁର ପଥରେ ଅଗ୍ରସର ହେଉଛି । ତାହାର ଆଉ କୌଣସି ବାସନା ନ ଥିଲା । କେବଳ ଦେବତାଙ୍କ ନିକଟରେ ପ୍ରାର୍ଥନା କରୁଥିଲା ଯେ, ମରିବା ସମୟରେ ଯେମିତି ଅମରକୁ ଦେଖିପାରେ ।

କମଳାର ପୀଡ଼ା ଗୁରୁତର ହେଲା । ମୂର୍ଚ୍ଛା ପରେ ମୂର୍ଚ୍ଛା ଯିବାକୁ ଲାଗିଲା, ମଥା ପାଖରେ ବିଧବା ନୀରବ । କମଳାର ଗ୍ରାମ୍ୟସଙ୍ଗୀନି ବାଳିକାମାନେ ଚାରିପଟେ ଘେରି ଠିଆହୋଇଛନ୍ତି । ଦରିଦ୍ର ବିଧବାର ଅର୍ଥ ନାହିଁ ଯେ, ଚିକିତ୍ସାର ବ୍ୟୟଭାର ବହନ କରିପାରେ । ମୋହନ ଦେଶରେ ନାହିଁ ଏବଂ ଦେଶରେ ଥିଲେ ସୁଦ୍ଧା ତାହା ନିକଟରୁ କିଛି ଆଶା କରିପାରି ନଥାଆନ୍ତା । ସେ ଦିନରାତି ପରିଶ୍ରମ କରି ସର୍ବସ୍ୱ ବିକ୍ରୟ କରି କମଳାର ପଥ୍ୟାଦି ଯୋଗାଉଥିଲା । ଚିକିତ୍ସକମାନଙ୍କ ଦୁଆରେ ଦୁଆରେ ବୁଲି ଭିକ୍ଷା ମାଗୁଥିଲା ଯେ, ସେମାନେ କମଳାକୁ ଥରେ ଦେଖିବାକୁ ଆସନ୍ତୁ । ବହୁ ମିନତିରେ ଚିକିତ୍ସକ କମଳାକୁ ଆଜି ରାତିରେ ଦେଖିବାକୁ ଆସିବ ବୋଲି ସ୍ୱୀକୃତ ହୋଇଅଛି ।

ଅନ୍ଧକାର ରାତିରେ ତାରାଗୁଡ଼ିକ ଘୋର ନିବିଡ଼ ମେଘରେ ବୁଡ଼ିଯାଇଛନ୍ତି । ବଜ୍ରର ଘୋରତର ଗର୍ଜନ ଶୈଳର ପ୍ରତ୍ୟେକ ଗୁହାରେ ପ୍ରତିଧ୍ୱନିତ ହେଉଅଛି ଏବଂ ଅବିରଳ ବିଜୁଳିର ତୀକ୍ଷ୍ଣ-ଚକିତ ଛଟା ଶୈଳର ପ୍ରତ୍ୟେକ ଶୃଙ୍ଗରେ ଆଘାତ କରୁଅଛି । ମୂଷଳ ଧାରାରେ ବୃଷ୍ଟି ପଡୁଅଛି । ପ୍ରଚଣ୍ଡ ବେଗରେ ଝଡ଼ ବହୁଅଛି । ଶୈଳବାସୀମାନେ ଅନେକ ଦିନ ହେଲା ଏପରି ଝଡ଼ ଦେଖିନାହାନ୍ତି । ଦରିଦ୍ର ବିଧବାର କ୍ଷୁଦ୍ର କୁଟୀର ଟଳମଳ ହେଉଛି । ଜୀର୍ଣ୍ଣ ଚାଳ ଭେଦକରି ବୃଷ୍ଟିଧାରା ଘରେ ପ୍ରବାହିତ ହେଉଛି ଏବଂ ଘର ପାଖରେ ନିଷ୍ପ୍ରଭ ପ୍ରଦୀପଶିଖା ଇତସ୍ତତଃ କମ୍ପୁଛି । ବିଧବା ଏହି ଝଡ଼ରେ ଚିକିତ୍ସକର ଆସିବାର ଆଶା ପରିତ୍ୟାଗ କରିଅଛି । ହତଭାଗିନୀ ନିରାଶ ହୃଦୟରେ ନିରାଶା-ବ୍ୟଞ୍ଜକ ସ୍ଥିର ଦୃଷ୍ଟିରେ କମଳର ମୁଖକୁ ଚାହିଁରହିଛି ଏବଂ ପ୍ରତ୍ୟେକ ଶବ୍ଦରେ ଚିକିତ୍ସକର ଆଶାରେ ଚକିତ ହୋଇ ଦୁଆରଆଡ଼େ ଚାହୁଁଅଛି । ଥରେ କମଳାର ମୂର୍ଚ୍ଛା ଭାଙ୍ଗିଲା । ମୂର୍ଚ୍ଛା ଭାଙ୍ଗିଲାରୁ ମାତାର ମୁଖକୁ ଅନାଇଲା । ଅନେକ ଦିନ ପରେ କମଳାର ଚକ୍ଷୁରେ ଜଳ ଦେଖାଦେଲା । ବିଧବା କାନ୍ଦିବାକୁ ଲାଗିଲା ବାଳିକାମାନେ କାନ୍ଦିପକାଇଲେ । ସହସା ଅଶ୍ୱର ପଦଧ୍ୱନି ଶୁଣାଗଲା ବିଧବା ଶଶବ୍ୟସ୍ତରେ ଉଠିପଡ଼ି କହିଲା, ଚିକିତ୍ସକ ଆସିଛନ୍ତି । ଦୁଆର ଉଦ୍‌ଘାଟିତ ହୁଅନ୍ତେ ଚିକିତ୍ସକ ଘରେ ପ୍ରବେଶ କଲେ । ତାହାଙ୍କ ଆପଦମସ୍ତକ ବସନରେ ଆବୃତ ବୃଷ୍ଟି ଧାରାରେ ସିକ୍ତ ବସନରୁ ବାରି-ବିନ୍ଦୁ ଝରିପଡୁଅଛି । ଚିକିତ୍ସକ

ବାଳିକାର ତୃଣଶଯ୍ୟା ସାମନାକୁ ଯାଇ ଛିଡା ହେଲେ । ଅବଶ ବିଷାଦମୟ ନେତ୍ର ଚିକିତ୍ସକର ମୁଖକୁ ଅନାଇ କମଳା ଦେଖିଲା ସେ ଚିକିତ୍ସକ ନୁହେ । ସେ ସେହି ସୌମ୍ୟ ଗମ୍ଭୀର ମୂର୍ତ୍ତି ଅମର ସିଂହ । ବିହ୍ୱଳା ବାଳିକା ପ୍ରେମପୂର୍ଣ୍ଣ ସ୍ଥିର ଦୃଷ୍ଟିରେ ତାହାଙ୍କ ମୁଖକୁ ଅନାଇ ରହିଲା । ବିଶାଳ ନେତ୍ର ଉଚ୍ଛୁଳି ଅଶ୍ରୁ ଗଡ଼ିପଡ଼ିଲା । ପ୍ରଶାନ୍ତ ହାସ୍ୟରେ କମଳାର ବିବର୍ଣ୍ଣ ମୁଖଶ୍ରୀ ଉଜ୍ଜ୍ୱଳ ହେଲା । କିନ୍ତୁ ଏହି ରୁଗ୍ଣ ଶରୀର ତାହାର ଆହ୍ଲାଦ ସହିଲା ନାହିଁ । ଧୀରେ ଧୀରେ ଅଶ୍ରୁସିକ୍ତ ନେତ୍ର ନିମୀଳିତ ହୋଇଗଲା । ଧୀରେ ଧୀରେ ବକ୍ଷର କମ୍ପନ ଥମିଗଲା । ଧୀରେ ଧୀରେ ପ୍ରଦୀପ ଲିଭିଗଲା । ଶୋକବିହ୍ୱଳା ସଙ୍ଗିନୀମାନେ ବସନ ଉପରେ ଫୁଲ ବିଛାଡ଼ିଦେଲେ, ଅଶ୍ରୁହୀନ ନେତ୍ରରେ ଦୀର୍ଘଶ୍ୱାସ ଶୂନ୍ୟ ବକ୍ଷରେ । ଅନ୍ଧକାର ମୟ ହୃଦୟରେ । ଅମର ସିଂହ ଧାଇଁଯାଇ ବାହାରିଗଲା । ଶୋକବିହ୍ୱଳା ବିଧବା ସେହିଦିନରୁ ପାଗଳିନୀ ହୋଇ ଭିକ୍ଷା କରି ଘୁରିବୁଲିଲା ଏବଂ ସନ୍ଧ୍ୟା ହେଲେ ପ୍ରତ୍ୟହ ସେହି ଭଗ୍ନାବଶିଷ୍ଟ କୁଟୀରରେ ଏକାକିନୀ ବସି କାନ୍ଦୁ ଥିଲା ।

*ଭାଷାନ୍ତର : ଲକ୍ଷ୍ମୀନାରାୟଣ ମହାନ୍ତି*



ମରାଠୀ ସାହିତ୍ୟର ପ୍ରଥମ ମୌଳିକ କାହାଣୀର ଲେଖକ ହେଉଛନ୍ତି କ୍ୟାପଟେନ ଗୋ.ଗୋ.ଲିମ୍‌ୟେ । ତାଙ୍କର ଜନ୍ମ ୧୮୯୧ ମସିହା ସେପ୍ଟେମ୍ବର ୨୫ ତାରିଖରେ । ଶିକ୍ଷା ସମାପ୍ତିପରେ ଆଫ୍ରିକୀୟ ସେନାରେ କ୍ୟାପ୍‌ଟେନଭାବେ କାର୍ଯ୍ୟ, ଚାକିରୀପରେ ସାରା ଜୀବନ ମରାଠୀ ସାହିତ୍ୟର ସାଧନାରେ ରତ । ସୈନିକ ଜୀବନର ଅନୁଭୂତି ସହ ଅନ୍ୟୁନ ଶତାଧିକ କାହାଣୀ ସେ ଲେଖିଛନ୍ତି । ତାଙ୍କ ରଚିତ 'କିସ୍ମତ' (ଭାଗ୍ୟ) ୧୯୨୨ରେ ପ୍ରକାଶିତ ଓ ମରାଠୀ ସାହିତ୍ୟର ପ୍ରଥମ ମୌଳିକ କାହାଣୀ ଭାବେ ସ୍ୱୀକୃତ ।

# ଭାଗ୍ୟ

ଗୁଡ୍ରୁମ୍, ଗୁଡ୍ରୁମ୍, ଧାଏଁ - ଆଉ ତାପରେ ବୋମା ବର୍ଷଣର ଭୟଙ୍କର ଶବ୍ଦ ।

ସେଇ ଚିର ପରିଚିତ ଶବ୍ଦ ଶୁଣିଲାକ୍ଷଣି ରାମଦୟାଲର କଳିଜା ଧକ୍ କଲା । ହାତ ଥରିବାକୁ ଲାଗିଲା ଓ ହାତରୁ ଷ୍ଟେଚର ଖସିବାକୁ ଲାଗିଲା । ସେଇ ଶବ୍ଦ ଥିଲା ବଦ୍ଦୁ (ବିଦ୍ରୋହୀ ଆରବ ଆଦିବାସୀ) ଲୋକଙ୍କ ବନ୍ଧୁକର । ଯା ପୂର୍ବରୁ ଏଇ ବିଶିଷ୍ଟ ଶବ୍ଦ ରାମଦୟାଲ୍ ଦୁଇ ଚାରିଥର ଶୁଣିଥିବ । ଅଥଚ ଠିକ୍ ଭାବରେ ଜାଣି ଗଲା, ଯେମିତି ସବୁଦିନିଆଁ କଥା । ବଦରାଗୀ କିମ୍ବା ମାଡୁଆ ଶିକ୍ଷକଙ୍କ ଗଳା ଖଙ୍କାରିବା ଶବ୍ଦ ହୁଏତ ଥରେ ଅଧେ ଶୁଣି ଥାଇପାରନ୍ତି । ମାତ୍ର ପିଲାମାନଙ୍କ ପାଇଁ ତାହା ପୁରାପୁରି ଜଣାଶୁଣା କଥା । ସେମିତି ସେଇ ଗୁଡ୍ରୁମ ଗୁଡ୍ରୁମ ରାମଦୟାଲର କାନରେ ପଶି ଯାଇଥିଲା । କେଉଁଠୁ କିଛି ଶବ୍ଦହେଲେ ରାମଦୟାଲର ଛାତି ଧଡ୍ ଧଡ୍ କରେ । ଅନୁମାନ କରି ଦେଖେ, ଏଥର ସତରେ ଲଢ଼େଇ ଆରମ୍ଭ ହୋଇଗଲା ବୋଲି । ତାପରେ ତାର ଘାବରେଇଯିବା କଥା କୁହନା । ଠିକ୍ ଭାବେ କଥା ବି କହି ପାରେ ନା ସେ ।

ରାମଦୟାଲ ଗୋଟିଏ ଫିଲ୍ଡ ଆମ୍ବୁଲାନ୍ସର ଷ୍ଟ୍ରେଚର ବାହକ ଥିଲା ଓ ସୈନିକ ଦଳ ସହିତ ଯାଉଥିଲା । ଆଗରେ ଯୁଦ୍ଧ ଆରମ୍ଭ ହେବା ଦେଖି ସାମ୍ନାର ସୈନ୍ୟଦଳ ଗୁଳିବର୍ଷଣ ଆରମ୍ଭ କରିଦେଲେ । ଧାଏଁ ଧାଏଁ ସୈନ୍ୟ ମାନଙ୍କ ଗୁଳିବର୍ଷଣ ଆରମ୍ଭ ହୋଇଗଲା । ଲୁଇସ୍ ଗନ୍‌ର ସର୍ ର୍ ର୍ ଶୁଭିଲା; ମେସିନ୍‌ଗନ୍ ମଧ୍ୟ ରେଟ୍ ରେଟ୍ ଗୁଳିବର୍ଷା ଆରମ୍ଭ କରିଦେଲା । ନିଜ ତରଫରୁ ଏଇ ଭୟଙ୍କର ଶବ୍ଦ ଶୁଣି ରାମଦୟାଲର ଦେହରେ ଜୀବନ ପଶିଲା । ଏତିକି ବେଳେ ସୈନିକ ଦଳ ସବୁଙ୍କୁ ନିଜ ନିଜ ସ୍ଥାନରେ ଅଟକିବାକୁ ଆଦେଶ ଆସିଲା । ସେତେବେଳେ ତାକୁ ଭଲ ଲାଗିଲା । ମାତ୍ର ଏଇ ଖୁସି ବେଶୀବେଳ ରହିଲା ନାଇଁ । ସୁଁ ସୁଁ .. କରି ଗୋଟିଏ ଗୁଳି ତା ମୁଣ୍ଡ ଉପରଦେଇ ଚାଲିଗଲା । ପୁଣି ଗୋଟିଏ ଗଲା । ତାପରେ ଏପାଖ ସେପାଖରୁ ସୁଁ..... କରି ଗୁଳି ଚାଲିବାକୁ ବସିଲା । ରାମଦୟାଲକୁ ଲାଗିଲା, ତାର ଜୀବନର ଶେଷ ସମୟ ଆସିଗଲା । ଏବେ ସେ ଆଉ କେବେବି ଘରକୁ ଫେରିବ ନାହିଁ, ତାର ହାଡ଼କୁ ବି ଶିଆଳ କୁକୁର ଟାଣି ନେବେ । ଷ୍ଟ୍ରେଚର ସବକୁ ତଳେ ରଖି ରାସ୍ତା କଡ଼ରେ ବସି ଯିବାକୁ ଆଦେଶ ଦିଆଗଲା । ସାଙ୍ଗେ ସାଙ୍ଗେ ରାମଦୟାଲ୍ ଗୋଟିଏ ଛୋଟ ନାଳ ଭିତରେ ହାତଗୋଡ଼ ଯାକିଯୁକି ହୋଇ ମୁଣ୍ଡ ଲୁଚେଇ ଶୋଇଗଲା । ଅନ୍ୟମାନେ କିଛି ଜଣ ହସ ଖୁସି କରିବାରେ ଲାଗିଲେ, କିଛିଜଣ ବିଦ୍ରୋହୀ ଆରବୀୟ ଆଦିବାସୀଙ୍କୁ ଗାଳିଦେବାକୁ ଲାଗିଲେ ଏବଂ ଯେଉଁମାନେ ଟିକେ ବୁଝିବା ଲୋକଥିଲେ, ନିଜର ମୁଣା ଖୋଲି ରୁଟି ତର୍କାରୀ ଖାଇବାକୁ ଲାଗିଲେ । ଜଣେ ଅତିଶୀଘ୍ର ମାଟିଖୋଳି ଚୁଲି ତିଆରିଲା ଓ ଶୁଖିଲା ଘାସ ଜଳେଇ ଚା ପାଇଁ ପାଣି ବସେଇଲା । ଯେଉଁମାନେ ଡ଼ରୁଆ ଥିଲେ ସେମାନେ ଲୁଚିବାପାଇଁ ଭିନ୍ନ ଭିନ୍ନ ସ୍ଥାନ ଖୋଜିବାକୁ ଲାଗିଲେ ତ କେହି କେହି ସେଠି ବସି ହୁକ୍କା ପିଇବା ଆରମ୍ଭ କରିଦେଲେ । କିଛିଜଣ ମଝିରେ ଉଠିପଡ଼ି ପରିସ୍ଥିତି ସମ୍ପର୍କରେ ଖବର

ନେବାକୁ ଲାଗିଲେ । ଗୁଳି ଫୁଟିବା ଚାଲୁ ରହିଥିଲା । କେବେ ପଞ୍ଚମ ତ କେବେ ସପ୍ତମ ସ୍ୱରରେ ଗୀତ ଗାଇ ଗୁଳି ଛୁଟୁଥିଲା । ଗୋଟିଏ ଗୁଳି, ରାମଦୟାଲ ଯେଉଁଠି ଶୋଇଥିଲା ସେଇ ନାଳର ଧଡ଼ିରେ ବାଜିଲା । କିନ୍ତୁ ସୌଭାଗ୍ୟକୁ ସେ ଆଣ୍ଠୁ ସନ୍ଧିରେ ମୁଣ୍ଡ ଲୁଚେଇ ଦେଇଥିଲା, ସେଇଥିପାଇଁ ଗୁଳି ଯୋଗୁଁ ଉଡୁଥିବା ଧୂଳି ଦେଖି ପାରିଲା ନାହିଁ ଓ ସେଇ ମୁହୂର୍ତ୍ତରେ ଚଟୁ ଘୋଡ଼ାଟିଏ ହେଇଁ ପଡ଼ିବାରୁ ଗୁଳିର ଧାଏଁ ଶବ୍ଦ ସେ ଜାଣି ପାରିଲା ନାହିଁ । ନଚେତ୍ ତାକୁ ଲାଗିଥାନ୍ତା ଯେ ଗୁଳି ତାକୁ ବାଜିଛି ଓ ସେ ମରି ଯାଇଛି ।

ଏଥର ଧାଡ଼ିବାନ୍ଧି ଠିଆ ହେବାକୁ ଆଦେଶ ଆସିଲା । ସାମ୍ନାଦଳରୁ ଅନେକ ଦଳ ଆହତ ହୋଇଥିଲେ । ସେଇଥିପାଇଁ ଷ୍ଟ୍ରେଚର ବାହକଙ୍କ ଗୋଟିଏ ଦଳ ଆଗକୁ ପଠେଇବାରଥିଲା । ଆଣ୍ଠୁ ସନ୍ଧିରୁ ମୁଣ୍ଡ କାଢ଼ି ରାମଦୟାଲ ନିଜ ସ୍ଥାନରେ ଥରି ଥରି ଠିଆ ହେଲା । ତାର ଷ୍ଟ୍ରେଚର ଉଠାଇଲା ଓ ଷ୍ଟେଚର ଆଗକୁ ବଢ଼ିଲା । ଏଥରତ ରାମଦୟାଲର ଚେତନା ବୁଡ଼ି ଯିବାକୁ ବସିଲା । ମନ ଭିତରେ ବାରମ୍ବାର ଡ଼ର ଲାଗୁଥିଲା । ଏଥର ଆଉ ଗୁଳି ବାଜିବ ନାହିଁ ତ ? ବାପାଲୋ, କେତେ ପାଖରୁ ଚାଲିଗଲା ଏଇଟା, ଆଃ । ଏଇଟା ତ ପୁରାପୁରି ପାଖରୁ ଚାଲିଗଲା । ହଁ ତା ସାଙ୍ଗରେ ଚାଲୁଥିବା ଷ୍ଟ୍ରେଚର ବାହକକୁ ବାଜିଲା । କିନ୍ତୁ ସୌଭାଗ୍ୟକୁ ସେ ବଞ୍ଚିଗଲା । ଗୁଳି ତାର ହାତରେ ବାଜି ଗଳି ଯାଇଥିଲା । 'ଡ୍ରେସିବାବୁ' (ଡ୍ରେସର) ପଟି ବାନ୍ଧି ତାକୁ ଫେରାଇ ଦେଲେ । ରାମଦୟାଲକୁ ଲାଗିଲା, ହାଏ, ଏଇ ଗୁଳି ମୋର ହାତରେ କାହିଁକି ବାଜିଲା ନାଇଁ । ତାପରେ ତ ମୁଁ ଆମ୍ବୁଲାନ୍ସରେ ବସି ଫେରି ଯାଇଥାନ୍ତି । ତାପରେ ଡ଼ାକ୍ତରଖାନା, ତାପରେ ବାଗଦାଦ୍, ଶେଷରେ ଇଣ୍ଡିଆ ଯିବାକୁ ସୁଯୋଗ ମିଳିଥାନ୍ତା । କିଛି ନହେଲେ ବି କିଛିଦିନ ପାଇଁ ଏଇ ଘମାଘୋଟ ଯୁଦ୍ଧରୁତ ମୁକ୍ତି ମିଳିଥାନ୍ତା । କିନ୍ତ, ହେଲା ନାହିଁ । ସେମାନେ ଆଗକୁ ବଢ଼ିବାକୁ ଲାଗିଲେ । ଗୁଳିର ବର୍ଷା ଚାଲୁ ରହିଥିଲା । ଧାଏଁ, ପୁଣି ଗୋଟିଏ ଗୁଳି ଆସିଲା, ଆସିଲା ନାଇଁ ଯେ, ତାର ନାୟକର ଛାତିରେ ପଶିଗଲା । ଧଡ଼ାମ୍ କରି ତଳେ ପଡ଼ିଗଲା । 'ଡ୍ରେସିବାବୁ' ଦେଖିଲା, ଦେଖିବାକୁ କିଛି ଆବଶ୍ୟକତା ନଥିଲା । ଅଳ୍ପ ଦୂରରେ ଗୋଟିଏ ଗାତ ଥିଲା । ରାସ୍ତାରୁ ଉଠାଇ ତାକୁ ସେଇଠି ଛାଡ଼ି ଦିଆଗଲା । ଭଗବାନଙ୍କ ନାଁ ଧରିବାକୁ ବି ସମୟ ମିଳିଲା ନାହିଁ ତାକୁ । ଗୁଳି କଣ କେବେ କାହାକୁ କହିକି ଆସେ ? ବନ୍ଧୁକର ଶବ୍ଦ ଶୁଭିବା ଆଗରୁହିଁ ସେଥିରୁ ବାହାରିଥିବା ଗୁଳି ଆମକୁ ଭେଦକରି ପଛ ପଟକୁ ଚାଲିଯାଏ । ଗୁଳି ଆସିଲା କହିବା ଭୁଲ, ଗୁଳି ଚାଲିଗଲା କୁହାଯିବା କଥା । ଆସିବା ଆଗରୁ ଗୁଳି ଘୋଷଣା କରେ ନାହିଁ ।

ନାୟକର ମୃତ୍ୟୁ ଦେଖି ରାମଦୟାଲର ଲୋମ ଟାଙ୍କୁରି ଉଠିଲା । ଆଗକୁ ଯିବାକୁ ତାଠାରେ ସାହସ ନଥିଲା । ତାର ମୁଣ୍ଡ ବୁଲେଇ ଦେଲା ଓ ଚାଲୁ ଚାଲୁ ସେ ହଠାତ୍ ତଳେ ବସି ପଡ଼ିଲା । ଅନ୍ୟଲୋକମାନେ ତାକୁ ଅନେକ ବୁଝେଇଲେ ଯେ, ତୁମେ ଏଇଠି ମଝିରେ ରହିଯିବବୋଲି । ଆମେତ ଆଗକୁ ଚାଲିଯିବୁ । ଆମ୍ବୁଲେନ୍ସ ମଧ୍ୟ ପଛରେ ରହିଯାଇଛି । କିନ୍ତୁ ନାଁ, ମୋ ପେଟରେ ଦରଜ ହେଉଛି କହି ସେ ରାସ୍ତାକଡ଼ରେ ଦେହକୁ ନିସ୍ତେଜକରି ପଡ଼ିରହିଲା । ଡ୍ରେସର ମଧ୍ୟ ତାକୁ ଅନେକ ବୁଝେଇଲା, ଧମକ ଦେଲା, ଯୋତାରେ

ବ୍ଦୋଷିବାର ଚେଷ୍ଟାକଲା । କିନ୍ତୁ ସବୁ ବେକାର । ଡ଼ରି ଲାଭ କଣ ? ଯାହା ହେବାର ଥିବ ହେବ । ଯଦି ତୋର ଭାଗ୍ୟରେ ମରିବାର ଥିବ ତେବେ ଏଇଠି ପଡ଼ି ବି ମରିବୁ । ଚାଲ ଉଠ, ପାଗଳ କୋଉଠିକାର ! ଡ୍ରେସର କହିଲା । ରାମଦୟାଲ କହିଲା, ବାବୁ, ମୁଁ ଡ଼ରୁନାହିଁ କିନ୍ତୁ ପେଟରେ ଭୟଙ୍କର ଦରଜ ହେଉଛି । ମୁଣ୍ଡ ବୁଲେଇ ଦେଉଚି ଆଉ ମୋଟେ ଚାଲି ପାରୁନାହିଁ । ମୁଁ ବି କଣ କରିବି ? ଡ୍ରେସର ତାକୁ କିଛି ଔଷଧ ପିଆଇଲା ଆଉ 'ମର ଶଳା ଏଇଠି !' କହି ଦଳ ସହିତ ଆଗକୁ ଚାଲିଗଲା ।

ସେଇଦଳ ଆଖି ଆଗରୁ ଅଦୃଶ୍ୟ ହୋଇଗଲା ପରେହିଁ ରାମଦୟାଲର ପେଟର ଦରଜ ହଠାତ୍ ବନ୍ଦ ହୋଇଗଲା ଓ ଧିରେ ଧିରେ ଉଠି ନଇଁ ନଇଁ ସେ ପଛକୁ ଫେରିବା ଆରମ୍ଭ କଲା । ଚାରିପଟୁ ଗୁଳି ଆସୁଥିଲା । ଗୁଳିର ସୁଁ.. ଶବ୍ଦ ଆସିବା କ୍ଷଣି ସେ ଆହୁରି ତଳକୁ ଝୁଙ୍କି ପଡୁଥିଲା । ଟିକେ ବଙ୍କେଇ ଗଲାପରେ ସେ ଚାରିପଟକୁ ଦେଖିଲା, କେହି ବି ଦେଖାଗଲେ ନାହିଁ । ଆଗଦଳର ଲୋକ ଆଗରେ ଓ ପଛ ଦଳର ଲୋକ ସୈନ୍ୟମାନଙ୍କ ପଛରେ । ସେ ମଝିରେ ଏକା ହୋଇଯାଇଥିଲା, ଏଥର ସଂଧ୍ୟା ହୋଇ ଆସୁଥିଲା । ସେ ଭାବି ପାରୁନଥିଲା କ'ଣ କରିବ ବୋଲି । ଥରେ ତାକୁ ଏମିତି ଲାଗିଲା ଯେ, ଯାହାବି ହେଉ ଆଗକୁ ଯାଇ ନିଜ ଦଳରେ ସାମିଲ ହୋଇଯିବ ବୋଲି । ତାପରେ ଯଦି ମରିବତ ବନ୍ଧୁ ମାନଙ୍କ ସହିତ ମରିବ । ଆହତ ହୋଇଗଲେ ଫେରିବାକୁ ଷ୍ଟ୍ରେଚର ମିଳିଯିବ । ଢ଼ୋକେ ପାଣି ଦରକାର ପଡ଼ିଲେ କେହିବି ଦେଇ ଦେବ । କିନ୍ତୁ ଯଦି ପାଦରେ ଗୁଳି ବାଜିବ ତ ? ତାହେଲେ କ'ଣ କରିବ ? ମରିଗଲେତ କାହାକୁ ଜଣାବି ପଡ଼ିବ ନାହିଁ । ନମରି ଯଦି ଏପଟୁ ଆସୁଥିବା ବିଦ୍ରୋହୀ ଆରବୀୟ ଆଦିବାସୀ ଆସି ଧରି ନେଇଯିବେ ତାହେଲେ ? ଏମିତି ଭାବି ଭାବି ପଛକୁ ଫେରିଲା । କିନ୍ତୁ ପୁଣି ତାକୁ ଲାଗିଲା, ଯେତିକି ଆଗକୁ ଯିବି, ସେତିକି ଡ଼ର ଲାଗିବ, ତାଛଡ଼ା ସେଇ ଦଳର ଯଦି ଭେଟ ନମିଳେ ତ ? ଏମିତି ସେ ଦୁଇ ତିନିଥର ଯା' ଆସ କଲା । ଏତିକିବେଳେ ତାର ବାଁପଟେ ତିନିପାଦ ଦୂରରେ ଗୋଟିଏ ଗୁଳି ଆସି ବାଜିଲା । ସେ ଭୟରେ ଥରିବାକୁ ଲାଗିଲା । ପାଣି ବୋତଲରୁ ପାଣି ପିଇବାକୁ ବି ତର ସହିଲା ନାହିଁ ।

ଏମିତି ରାତି ହୋଇଗଲା । ଗୁଳି ଚାଲିବା ଧିରେ ଧିରେ କମିଗଲା । ତୋପର ଗର୍ଜନ ସ୍ଥିର ହୋଇଗଲା । ସେଇ ରାତିରେ ସେଇଠି 'କେମ୍ପ' କରିବାକୁ ଆଦେଶ ଆସିଲା ।

ଡ୍ରେସର ବାବୁ ତା'ଦଳକୁ ନେଇ ଫେରିବାକୁ ଲାଗିଲା । ଚାଲୁ ଚାଲୁ ରାସ୍ତାରେ ସେ ଝୁଣ୍ଟି ପଡ଼ିଲା । ଦିଆସିଲି ଜାଳି ଦେଖିଲା, ରାମଦୟାଲର ଶବ । ଗୁଳି ଠିକ୍ ତା ଛାତିରେ ପଶି ଆର ପାଖରେ ବାହାରି ଯାଇଥିଲା ।

*ଭାଷାନ୍ତର : ସନ୍ଦୀପ କୁମାର କୁଅଁର*



ଉର୍ଦ୍ଦୁ ସାହିତ୍ୟର ଆଦ୍ୟ କଥାକାର ସୈୟଦ ଅହମ୍ମଦ ଖାଁଙ୍କ ଜନ୍ମ ୧୮୧୭ ମସିହାରେ ଦିଲ୍ଲୀ ସହରରେ । କେବଳ ସାହିତ୍ୟ ନୁହେଁ ବରଂ ଧର୍ମ, ରାଜନୀତି, ସମାଜ ସଂସ୍କାର ତଥା ଶିକ୍ଷା କ୍ଷେତ୍ରରେ ତାଙ୍କର କାର୍ଯ୍ୟକଳାପ ଉଲ୍ଲେଖନୀୟ । ଆଧୁନିକ ଉର୍ଦ୍ଦୁ ଗଦ୍ୟର ସେ ଜନକ କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଭିନ୍ନ ଗ୍ରନ୍ଥ ରଚନା ସହିତ ଅଗଣିତ ଲେଖା ତାଙ୍କର ପ୍ରକାଶିତ । ୧୮୮୯ରେ ଏଡ଼ିନବରା ବିଶ୍ୱବିଦ୍ୟାଳୟ ଦ୍ୱାରା ସେ ଡ଼କ୍ଟର ଅଫ୍ ଲ' ଉପାଧିରେ ଭୂଷିତ । 'ଗୁଜରା ହୁଆ ଜମାନା' (ବିତି ଯାଇଥିବା ସମୟ) ତାଙ୍କ ପ୍ରଥମ ଓ ଶେଷ ଗଳ୍ପ ହେଲେ ମଧ୍ୟ ଉର୍ଦ୍ଦୁ ସାହିତ୍ୟର ପ୍ରଥମ କାହାଣୀଭାବେ ତାହା ସ୍ୱୀକୃତ ।

# ।। ବିତି ଯାଇଥିବା ସମୟ ।।

ବର୍ଷର ଶେଷ ରାତି ।

ନିଜର ଅଂଧକାରାଛନ୍ନ ଘର ଭିତରେ ବସିରହିଛି ବୁଢ଼ାଟିଏ । ରାତିଟି ମଧ ଭୟଙ୍କର ଓ ଅଂଧକାରାଛନ୍ନ । ମେଘ ଘୋଟି ରହିଛି । ରହି ‘ରହି ଘଡ଼ଘଡ଼ିର ଗର୍ଜନ ସହ ଚମକି ଯାଉଛି ବିଜୁଳି । ପ୍ରବଳ ହେଉଛି ପବନର ବେଗ । ଥରିଯାଉଛି ହୃଦୟ । ଭୟଭୀତ ହୋଇ ଉଠୁଛି ପ୍ରାଣ ।

ବୁଢ଼ାଟି ନିହାତି ଦୁଃଖି ।

ମାତ୍ର ଟା’ର ଦୁଃଖ ଅନ୍ଧାର ରାତି ପାଇଁ ବା ବିଜୁଳିର ଗର୍ଜନ ପାଇଁ ନୁହେଁ । ନିଜର ଅନ୍ଧକାରାଛନ୍ନ ଘର ବା ତାର ଏକାକୀପଣ ପାଇଁ ନୁହେଁ । ପ୍ରବଳ ପବନର ଶବ୍ଦ ପାଇଁ କିୟା ଆଜି ହେଉଛି ବର୍ଷର ଶେଷ ଦିନ, ସେପାଇଁ ମଧ ନୁହେଁ । ସେ ହଜିଲା ଦିନର ସ୍ମୃତି ସବୁକୁ ମନେ ପକେଇ ଚାଲିଛି । ପଛକଥା ସବୁ ଯେତେ ଅଧିକ ମନେ ପଡୁଛି, ସେତିକି ଅଧିକ ବଢ଼ି ଚାଲିଛି ଟା’ର ଦୁଃଖ । ହାତରେ ଢ଼ାଙ୍କି ରଖିଥିବା ମୁହଁ ଉପରେ ନିଗିଡ଼ି ପଡୁଛି ଆଖିର ଲୁହ ।

ଅତୀତ ଦିନ ସବୁ ନାଚିଯାଉଛି ଟା’ ଆଖି ଆଗରେ । ମନେ ପଡୁଛି ପିଲାଦିନ । ସେତେବେଳେ ଟା’ର କୌଣସି କଥାକୁ ନେଇ ଚିଁନ୍ତା ଚିନ୍ତା ନଥିଲା କି ଦୁଃଖ ନ ଥିଲା । ଟଙ୍କା ସୁନା ଅପେକ୍ଷା ରାବଡ଼ି ଆଉ ମଲେଇ ଟା’ପାଇଁ ଅଧିକ ପ୍ରିୟ ବସ୍ତୁ ଥିଲା । ବାପା, ମା, ଭାଇ, ଭଉଣୀ ଘରେ ସମସ୍ତେ ଟାକୁ ଭଲ ପାଉଥିଲେ । ଶୀଘ୍ର ଛୁଟି ପାଇବାର ଖୁସିରେ ସହଳ ସହଳ ବହିଖାତା ହାତରେ ଧରି ପଢ଼ିବାପାଇଁ ସ୍କୁଲ ଚାଲି ଯାଉଥିଲା । ସ୍କୁଲ କଥା ଭାବିଲାବେଳକୁ ଟା’ର ମନେ ପଡ଼ିଯାଉଥିଲା ସହପାଠୀମାନଙ୍କ କଥା । ସେ ଅଧିକ ଦୁଃଖି ହୋଇ ପଡୁଥିଲା ଓ ନିଜ ଉପରୁ ନିୟନ୍ତ୍ରଣ ହରେଇ ବସିଲା ପରି ଚିତ୍କାର କରି ଉଠୁଥିଲା- ‘ହାଏ, ସମୟ, ହାଏ ସମୟ ! ବିତିଯାଇଥିବା ସମୟ । ଅବଶୋଷ, ମୁଁ ତୋତେ ଅନେକ ଡ଼େରିରେ ମନେ ପକେଇଲି ।

ଟା’ର ମନେପଡୁଥିଲା ଯୁବାବସ୍ଥାରେ ଦିନସବୁ । ନିଜର ଲାଲ୍ ଗୋରା ମୁହଁ, ହୃଷ୍ଟପୁଷ୍ଟ ଶରୀର, ସୁନ୍ଦର ସ୍ୱାସ୍ଥ୍ୟ, ଅପରୂପ ଆଖି, ମୋତିର ଦାନା ପରି ଦାନ୍ତ, ଆବେଗପୂର୍ଣ୍ଣ ହୃଦୟ, ମାନବୀ ଭାବୁକତାର ଆବେଶଜନିତ ଖୁସୀ ଅନେକ କିଛି ମପେପଡୁଥିଲା ଟା’ର । ସେ ସମୟରେ ସତେ ଯେମିତି ଟା’ର ଆଖି ଉପରେ ଅନ୍ଧକାରର ଏକ ପରଳ ପଡ଼ିଯାଇଥିଲା । ମା, ବାପା ଯାହା ଉପଦେଶ ଦେଉଥିଲେ, ନ୍ୟାୟ ପରାୟଣତା ଓ ଧର୍ମନିଷ୍ଠାର ଶିକ୍ଷା ଦେଉଥିଲେ, ସେସବୁ କିଛି ଟା’କାନରେ ପଶୁ ନଥିଲା । ସେ କହୁଥିଲା- ‘ଓହୋ, ବହୁତ ସମୟ ବାକୀ ଅଛି । ବୃଦ୍ଧାବସ୍ଥା କଥା ସେ ମୋଟେ ହିଁ ଭାବୁନଥିଲା । ଏବେ ସବୁକଥା ମନେ ପକେଇ ଅନୁତାପ କରୁଥିଲା । ସତରେ କେତେ ଭଲ ହୋଇଥାନ୍ତା ଯଦି ସେ ସେତେବେଳେ ଧର୍ମନିଷ୍ଠା ଓ ନୈତିକତା ଆଦିକୁ ହୃଦୟରେ ସ୍ଥାନ ଦେଇଥାନ୍ତା ଏବଂ ମୃତ୍ୟୁ ପାଇଁ ପ୍ରସ୍ତୁତ ହୋଇ ରହିଥାନ୍ତା ଆଃ, ସମୟ ବିତିଗଲା । ଆଃ, ସମୟ ବିତିଗଲା । ଏବେ ଅନୁତାପ କଲେ କ’ଣ ହେବ ! ଆଃ, ଅବଶୋଷ, ମୁଁ ନିଜେ ନିଜକୁ

ଏହି କଥା କହି ନଷ୍ଟ କରି ଚାଲିଥିଲି ଯେ ବହୁତ ସମୟ ବାକୀ ଅଛି ।

ଏମିତି କହୁ କହୁ ସେ ନିଜ ବସିବା ସ୍ଥାନରୁ ଉଠିପଡ଼ିଲା ଓ ଅଣ୍ଡାଳି ଅଣ୍ଡାଳି ଝରକା ପାଖକୁ ଆସିଲା । ଝରକା ଖୋଲି ଦେଖିଲା ରାତି ସେଇମିତି ଭୟଙ୍କର ଦିଶୁଛି । କଳା ମେଘ ଘୋଟି ରହିଛି । ବିଜୁଳିର ଗର୍ଜନରେ ହୃଦୟ ଫାଟି ପଡ଼ିଲା ପରି ମନେ ହେଉଛି । ଭୟଙ୍କର ତୋଫାନ ଆରମ୍ଭ ହୋଇଯାଇଛି । ଗଛରୁ ଡ଼ାଳପତ୍ର ଛିଡ଼ି ପବନରେ ଏଣେ ତେଣେ ବିଛାଡ଼ି ହୋଇ ପଡୁଛି । ପୁଣି ସେ ଚିହ୍ନାର କରି କହିବାକୁ ଲାଗିଲା- ହାଏ, ହାଏ ମୋ'ର ବିତିଯାଇଥିବା ଜୀବନ ବି ଏଇମିତି ଭୟଙ୍କର, ଠିକ୍ ଏଇ ରାତି ପରି । ସେଇମିତି ବିଳାପ କରୁ କରୁ ସେ ପୁଣି ଆସି ନିଜ ସ୍ଥାନର ବସିଲା ।

ପୁଣି ତାର ବାପା,ମା, ଭାଇ,ଭଉଣୀ, ବଂଧୁ-ବାଂଧବ ସବୁ ମନେ ପଡ଼ିଲେ, ଯେଉଁ ମାନଙ୍କର ହାଡ଼ ସୁଦ୍ଧା କବର ତଳେ ପଚିସଢ଼ି ନଷ୍ଟ ହୋଇ ସାରିଥିଲା । ତା'ର ମନେ ହେଲା ସତେ ଯେମିତି ତା'ମା ସ୍ନେହରେ ତାକୁ ଛାତିରେ ଜାକି ଧରି ଛିଡ଼ା ହୋଇଛି । ଲୁହ ଭରା ଆଖିରେ ସତେ ଅବା କହୁଛି- ହାଏ ବେଟା, ସମୟ ବିତିଗଲା । ଏବେ ତା'ଆଖି ସାମ୍ନାରେ ସ୍ପଷ୍ଟ ହୋଇ ଉଠିଲା ତା' ବାପାଙ୍କର ଉଜ୍ଜଳ ମୁହଁ । ସେ ସତେ ଯେମିତି କହୁଥିଲେ- 'ବେଟା, ଆମେ ସବୁ ତୋ'ରି ଭଲ ପାଇଁ ହିଁ ତ କହୁଥିଲୁ । ଭାଇ-ଭଉଣୀ ଦାନ୍ତତଳେ ଆଙ୍ଗୁଳି ଚାପି ଚୁପ୍‌ଚାପ୍ ଛିଡ଼ା ହୋଇଛନ୍ତି । ସେମାନଙ୍କ ଆଖିରୁ ଲୁହର ଧାରା ଝରି ଚାଲିଛି ଅନବରତ । ବଂଧୁ-ବାଂଧବ ସମସ୍ତେ ଛିଡ଼ା ହୋଇଛନ୍ତି ଦୁଃଖରେ । କହୁଛନ୍ତି- ''ଆମେ ଭଲା କ'ଣ କରି ପାରିବୁ ଏବେ ?''

ଏମିତି ଭାବୁଭାବୁ ତା'ର ନିଜର ବାପା-ମା-ଭାଇ-ଭଉଣୀ ଏବଂ ବଂଧୁ-ବାଂଧବ ସମସ୍ତଙ୍କ ପ୍ରତି କରିଥିବା ବେପରୁଆ, ହୃଦୟହୀନ ଓ କ୍ରୁରତାପୂର୍ଣ୍ଣ ଆଚରଣ ସବୁ ମନେ ପଡ଼ିଲା । ମା'କୁ ଦୁଃଖି ରଖିବା, ବାପାଙ୍କୁ ଅସନ୍ତୁଷ୍ଟ କରିବା, ଭାଇଭଉଣୀ ମାନଙ୍କ ପ୍ରତି ନିର୍ଦ୍ଦୟ ହେବା ଏବଂ ସାଂଗ ବଂଧୁ-ବାଂଧବ ମାନଙ୍କ ପ୍ରତି ସହାନୁଭୂତି ନରଖିବା ଆଦି ସବୁ କଥା ମନେ ପଡ଼ିବାକୁ ଲାଗିଲା । ମାଟିରେ ମିଶିଯାଇଥିବା ହାଡ଼ମାଂସରେ ସତେଯେମିତି ସେ ଅନୁଭବ କରୁଥିଲା ଏକ ମମତ୍ୱବୋଧ ଓ ଏଇ ଅନୁଭବ ସତେ ଅବା ଭାଙ୍ଗିରୁଜି ଚୁରମାର କରିଦେଇଥିଲା! ତା'ର ହୃଦୟକୁ । ଛାତି ଭିତରେ କୋଉଠି ଗୋଟିଏ ନିଶ୍ୱାସ ଅଟକି ଯାଉ ଥିଲା ତା'ର । ସେ ଚିହ୍ନାର କରି ଉଠୁଥିଲା- ହାଏ ସମୟ ବିତିଗଲା, ହାୟ, ସମୟ ବିତିଗଲା । ଏବେ କ'ଣ ଆଉ ଫେରି ଆସିବ ?' କେମିତିକା ଭୟଭୀତ ହୋଇ ସେ ପୁଣି ଝରକା ପାଖରୁ ଦୌଡ଼ିଗଲା ଏବଂ ଉଠି ପଡ଼ି ଯେମିତି ସେମିତି ଝରକା ପାଖରେ ପହଁଞ୍ଚିଲା । ଝରକା ଖୋଲି ଦେଖିଲା, ପବନର ବେଗ ଟିକେ କମିଯାଇଛି । ବିଜୁଳିର ଗର୍ଜନ ମଧ୍ୟ । କିନ୍ତୁ ରାତି ସେଇମିତି ଅନ୍ଧକାରାଚ୍ଛନ୍ନ ହୋଇ ରହିଛି । ତା'ର ଭୟ ଟିକେ କମି ଆସିଲା ଓ ସେ ପୁଣି ଆସି ନିଜ ସ୍ଥାନରେ ବସିଲା ।

ଠିକ୍ ଏତିକି ବେଳକୁ ତାକୁ ତା'ର ପ୍ରୌଢ଼ାବସ୍ଥା କଥା ମନେ ପଡ଼ିଲା । ସେତେବେଳେ ଯୁବାବସ୍ଥା ନଥିଲାକି ଯୁବାବସ୍ଥାର ଯୌବନ । ହୃଦୟ ନଥିଲା କି ହୃଦୟର ପ୍ରବଳ ଆବେଗ ଜନିତ ଉତ୍ତେଜନା । ସେ ତା'ର ଜୀବନର ସଦାଚାର ପୂର୍ଣ୍ଣ ମୁହୂର୍ତ୍ତ ସବୁକୁ ମନେପକେଇଲା, ଯେତେବେଳେ କୌଣସି ଖରାପ କାମ କରିବା ଅପେକ୍ଷା ସେ ଉଚିତ୍ ଓ ଭଲ କାମ ପ୍ରତି ଅଧିକ ଦୃଷ୍ଟି ଦେଉଥିଲା । ସେ ରୋଜା-ନମାଜ, ହଜ (ତୀର୍ଥ) ଜକାତ (ଦାନ)ରେ ଅବହେଳା କରୁନଥିଲା । ଭୋକିଲା ମଣିଷଙ୍କୁ ଖୁଆଇବା, ମସଜିଦ ଓ କୂଅ

ଆଦି ନିର୍ମାଣ କରିବାରେ ସେ ମନ ଦେଉଥିଲା । ଏବେ ସେ ସବୁକୁ ମନେ ପକେଇ ସେ ନିଜ ମନକୁ ବୁଝାଉ ଥିଲା । ଫକୀର ଏବଂ ସାଧୁ ସନ୍ୟାସୀ ମାନଙ୍କର ସେବା କରୁଥିଲା । ନିଜର ଧର୍ମଗୁରୁ ମାନଙ୍କର ହସ୍ତ ଚୁମ୍ବନ କରି ପରମ୍ପରାନୁସାରେ ତାଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲା । ସମସ୍ତଙ୍କୁ ସେ ସାହାଯ୍ୟ ପାଇଁ ଡ଼ାକୁଥିଲା ମାତ୍ର ତା'ର ହୃଦୟର ବ୍ୟାକୁଳତା କମୁ ନଥିଲା । ସେ ଜାଣୁଥିଲା ଯେ ତାର ନିଜର ଆଚାର ବ୍ୟବହାରର ସେଇଟା ହିଁ ଥିଲା ଶେଷ ସୀମା । ଭୋକିଲା ମାନେ ସେଇମିତି ଭୋକିଲା ରହିଛନ୍ତି । କୋଉଠି ମସଜିଦ୍ ଭାଙ୍ଗିରୁଜି ଧ୍ୱଂସସ୍ତୁପରେ ପରିଣତ ହୋଇଗଲାଣି ତ କୋଉଠି ତା' ଚାରିପଟେ ଜଙ୍ଗଲ ମାଡ଼ି ଗଲାଣି । କୂଅ ମାନଙ୍କ ନନ୍ଦ ସବୁ ଭାଙ୍ଗି ବିପଜ୍ଜନକ ସ୍ଥିତିରେ ରହିଛନ୍ତି । ସାଧୁ–ସନ୍ୟାସୀ ଫକୀର କେହି ତା'ର ଡ଼ାକ ଶୁଣୁ ନାହାଁନ୍ତି । କେହି ତାକୁ ସାହାଯ୍ୟ କରୁନାହାଁନ୍ତି । ଛାତି ଭିତରେ ପୁଣି ଜମାଟ ବାନ୍ଧୁଛି ଭୟ ସେ ଭାବିବାକୁ ଲାଗୁଛି । ମୁଁ କଣ କଲି । ଖାଲି ପାର୍ଥିବ ଜିନିଷ ଯାକରେ ମନ ଦେଲି । ପରେ ଯେଉଁ ଜୀବନ ବୋଧ ଜନ୍ମ ନେଲା, ପୂର୍ବରୁ କାହିଁକି ନ ଥିଲା ସେସବୁ ମୋ'ଭିତରେ ?. ଏବେ ଆଉ କିଛି ନାହିଁ ନିଜ ହାତରେ । ଏମିତି କହୁ କହୁ ସେ ପୁଣି ଚିତ୍କାର କରି ଉଠିଲା-ହାଏ ସମୟ, ହାଏ ସମୟ । ମୁଁ ତୋତେ କାହିଁକି ହଜେଇ ଦେଲି ?''

ଭୟଭୀତ ହୋଇ ସେ ପୁଣି ଝରକା ପାଖକୁ ଦୌଡ଼ିଗଲା । ଝରକାର ପରଦା ଟେକି ଦେଖିଲା ଆକାଶ ସଫା ହୋଇ ଆସିଲାଣି । ତୋଫାନ ଥମି ଯାଉଛି । ମେଘ ସବୁ ଖେଳେଇ ହୋଇ ଗଲାଣି । ତାରା ଦିଶିବାକୁ ଲାଗିଲେଣି । ଅନ୍ଧକାରବି ଟିକେ ଟିକେ କମ ହୋଇ ଆସିଲାଣି, ତାରାମାନଙ୍କ ଆଲୁଅରେ । ସେ ମନକୁ ବୁଝେଇବାକୁ ତାରକାପୂର୍ଣ୍ଣ ରାତିକୁ ଚାହିଁ ରହିଲା । ହଠାତ୍ ତାକୁ ଆକାଶ ମଝିରେ ଏକ ଉଜ୍ଜ୍ୱଳ ଆଲୋକପୁଂଜ ଦେଖାଗଲା ଆଉ ତା'ଭିତରେ ଏକ ଅତି ସୁନ୍ଦର ନବବଧୂ । ସେ ଅପଲକ ନୟନରେ ଦେଖିବାକୁ ଲାଗିଲା ତାକୁ । ଯେତେ ସେ ଦେଖୁଥାଏ ତା' ଆଡ଼କୁ ସେ ସେତିକି ପାଖେଇ ଆସୁଥାଏ । ଏମିତିକି ଶେଷରେ ସେ ତା'ର ରୂପ ଓ ସୌନ୍ଦର୍ଯ୍ୟକୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ଅତି ପବିତ୍ର ହୃଦୟ ଓ ସ୍ନେହପୂର୍ଣ୍ଣ ସ୍ୱରରେ ସେ ତାଙ୍କୁ ପଚାରିଲା - ''ତୁମେ କିଏ ?'' ସେ କହିଲା ''ମୁଁ ହେଉଛି ଚିରଦିନ ଜୀବିତ ରହୁଥିବା ମଣିଷର ସଜ୍ଜନତା''। ସେ ପଚାରିଲା ''ତୁମକୁ ବଶୀଭୂତ କରିବା ପାଇଁ କୌଣସି ମନ୍ତ୍ର ଅଛି? ''ସେ କହିଲା - ''ହଁ ଅଛି, ବହୁତ ସହଜ କିନ୍ତୁ ଭାରି କଠିନ । ଯିଏ ଏକ ସାଧାରଣ ଗ୍ରାମୀଣ ପରି ଭଗବାନଙ୍କ ପ୍ରତି ନିଜର କର୍ତ୍ତବ୍ୟ ଓ ପ୍ରାର୍ଥନା ସମ୍ପାଦନା କରି ମଣିଷ ସମାଜର ମଙ୍ଗଳ ଓ ଉନ୍ନତି ପାଇଁ ଚେଷ୍ଟା କରେ, ମୁଁ ତାର ଦାସୀ ହୋଇ ରହେ । ସଂସାରରେ କୌଣସି ବସ୍ତୁ ଚିରନ୍ତନ ନୁହେଁ । କେବଳ ମଣିଷର ମନୁଷ୍ୟତା ହିଁ ଚିରଦିନ ବଂଚି ରହେ । ମଣିଷର କଲ୍ୟାଣ ଓ ଉନ୍ନତି ପାଇଁ ଯେଉଁ କାର୍ଯ୍ୟ କରାଯାଇଥାଏ, ତାହା ଗୋଟିଏ ଜାତି ଓ ବଂଶରୁ ଅନ୍ୟ ଜାତି ଓ ବଂଶ ହୋଇ ସବୁଠି ବ୍ୟାପିଯାଏ । ନମାଜ, ରୋଜା, ହଜ, ଜକାତ୍, ସବୁ ଏଇଠି ଶେଷ ହୋଇଯାଆନ୍ତି । ତା'ର ମୃତ୍ୟୁ ସବୁ କିଛି କୁ ସମାପ୍ତ କରିଦିଏ । ଭୌତିକ ବସ୍ତୁ ସବୁତ ଦୁଇଚାରି ଦିନରେ ନଷ୍ଟ ହୋଇଯାନ୍ତି । ମାତ୍ର ମଣିଷର ସଚ୍ଚରିତ୍ରତା ଶେଷ ପର୍ଯ୍ୟନ୍ତ ଜୀବିତ ରହେ । ମୁଁ ହେଉଛି ସଂପୂର୍ଣ୍ଣ ମଣିଷ ଜାତିର ଆତ୍ମା । ଯିଏ ମୋତେ ପାଇବାକୁ ଚାହେଁ ତା'ର ମଣିଷ ଜାତିର ସେବା କରିବା ଉଚିତ୍ । କମ୍ ସେ କମ୍ ନିଜ ସଂପ୍ରଦାୟ ଲୋକଙ୍କ ସେବା ତ ନିଜ ଧନମନ ଦେଇ କରିବା ଉଚିତ୍ । ଏହା କହି ନବବଧୂଟି ଅଦୃଶ୍ୟ ହୋଇଗଲା ଓ ବୁଢ଼ାଟି ପୁଣି ଆସି ନିଜ ସ୍ଥାନରେ ବସିଲା ।

ଏଥର ପୁଣି ସେ ନିଜର ପୁରୁଣା ଦିନ ସବୁକୁ ମନେ ପକେଇଲା । ସେ ଅନୁଭବ କଲା ଯେ [illegible] ପାଇଁ କିମ୍ବା [illegible]

ସଂପ୍ରଦାୟର ଲୋକଙ୍କ କଲ୍ୟାଣ ପାଇଁ ସେ କିଛି କରିନାହିଁ । ତା'ର ସବୁ କାମ ନିଜର ସ୍ୱାର୍ଥ ପାଇଁ ଉଦ୍ଦିଷ୍ଟ ଥିଲା । ଯାହା କିଛି ଭଲ କାମ ସେ କରିଥିଲା ସେ ସବୁ ଭଗବାନଙ୍କୁ ଲାଂଚ ଦେବାଭଳି କେବଳ ପୁଣ୍ୟ ଲୋଭରେ କରିଥିଲା । ଜନକଲ୍ୟାଣ ଓ ପରୋପକାରର ଶୁଦ୍ଧ ସଂକଳ୍ପ ନେଇ ସେ କିଛି ବି କରି ନଥିଲା ।

ନିଜର ସ୍ଥିତି କଥା ଭାବି ଓ ହୃଦୟ ଉପରେ ଅଧିକାର କରିନେଇଥିବା ସେଇ ନବବଧୂ ସହ ଭେଟ ବେଳର କଥା ସବୁ ମନେପକେଇ ସେ ଉଦାସ ହୋଇ ଉଠିଲା । ନିଜର ଜୀବନ କାଳ ଶେଷ ହୋଇ ଆସୁଥିବାର ଜାଣି ସେ ଆଉ କିଛି କରିପାରିବାର ଆଶା ମଧ୍ୟ କରି ପାରିଲା ନାହିଁ । ନିହାତି ଉଦାସ ମନରେ ସେ ବଡ଼ ବିକଳ ହୋଇ ଚିତ୍କାର କରିବାକୁ ଲାଗିଲା-''ହାୟ ସମୟ, ହାୟ ସମୟ ! କ'ଣ ତୋତେ ମୁଁ ପୁଣି ଫେରେଇ ଆଣି ପାରିବି ? ହାୟ ଦଶହଜାର ସୁନା ମୋହର ନେଇ ଯଦି କେହି ସମୟକୁ ଫେରେଇ ଦିଅନ୍ତା ଆଉ ମୁଁ ଯୁବକ ହୋଇ ପାରନ୍ତି 'ଏତିକି କହି ସେ ଏକ ଥଣ୍ଡା ଦୀର୍ଘଶ୍ୱାସ ଛାଡ଼ିଲା ଓ ଅଚେତ ହୋଇପଡ଼ିଲା ।

ଅଳ୍ପ ସମୟ ପରେ ସେ ନିଜ କାନରେ ମିଠା କଥାର ସ୍ୱର ଅନୁଭବ କଲା । ତା'ର ମମତାମୟୀ ମା'ଆସି ତା' ସାମ୍ନାରେ ଠିଆ ହେଲା ତାକୁ ଛାତିରେ ଭିଡ଼ିଧରି ଚୁମ୍ବନ ଦେଲା । ପୁଣି ସାମ୍ନାରେ ଥିଲେ ବାପା । ଛୋଟ ଭାଇଭଉଣୀ ମାନେ ଆସି ଠିଆ ହେଲେ ପାଖରେ । ମାଁ କହିଲା ''ବେଟା, କାହିଁକି ଏମିତି କାନ୍ଦୁଛୁ ଶୁଭ ଦିନଟାରେ ? କ'ଣ ପାଇଁ ତୋ'ର ମନ ଏମିତି ବ୍ୟାକୁଳ ହେଉଛି ? କାନ୍ଦି କାନ୍ଦି ହିକ୍କା ଉଠିଲାଣି ତୋ'ର । କ'ଣ ପାଇଁ ? ଉଠ ! ହାତ ମୁହଁ ଧୋଇନେ । ଲୁଗା ପନ୍ଧ ଆଉ ନୂଆବର୍ଷର ଖୁସିରେ ସାମିଲ ହୋଇ ଯା । ତୋ ଭାଇ ଭଉଣୀ ମାନେ ତୋ' ଅପେକ୍ଷାରେ ଠିଆ ହୋଇ ରହିଛନ୍ତି ।

ହଠାତ୍ ବାଳକଟି ନିଦରୁ ଉଠିଲା । ସେ ଜାଣିଲା ଯେ ସେ ସ୍ୱପ୍ନରେ ବୁଢ଼ା ହୋଇ ଯାଇଥିଲା । ସେ ନିଜର ସଂପୂର୍ଣ୍ଣ ସ୍ୱପ୍ନ ବୃତ୍ତାନ୍ତ ମାଂକୁ ଶୁଣେଇଲା । ମା' ତା'କଥା ଶୁଣି କହିଲା- ''ବେଟା, ବାସ, ତୁ ସେମିତି ମୋଟେ କରିବୁ ନାହିଁ, ଯେମିତି ସେ ଅନୁତାପ କରୁଥିବା ବୁଢ଼ାଟି କରିଥିଲା । ବରଂ ତୁ ସେ କଥାସବୁକୁ ମାନ, ଯାହା ସେଇ ନବବଧୂଟି ତୋତେ କହିଥିଲା ।

ମା'କଥା ଶୁଣି ବାଳକଟି ପଲଙ୍କ ଉପରୁ ତଳକୁ ଡେଇଁ ପଡ଼ିଲା । ଖୁସିରେ ବିହ୍ୱଳ ହୋଇ କହିବାକୁ ଲାଗିଲା ଆଜି ହେଉଛି ମୋ'ଜୀବନର ପ୍ରଥମ ଦିନ । ମୁଁ କେବେ ହେଲେ ସେ ବୁଢ଼ା ପରି ଅନୁତାପ କରିବି ନାହିଁ ଆଉ ନିଶ୍ଚୟ ସେହି ବଧୂଟିକୁ ବାହା ହେବି ଯାହାର ମୁହଁ ଏତେ ସୁନ୍ଦର ଆଉ ଯିଏ ମୋତେ ତା'ର ନାମ ଚିରଦିନ ବଂଚି ରହୁଥିବା ସଜ୍ଜନତା ବୋଲି କହିଲା । ହେ ଭଗବାନ ! ହେ ଭଗବାନ ! ମୋତେ ସାହାଯ୍ୟ କର । ହେ ସର୍ବଶକ୍ତିମାନ ।

ହେ ମୋ'ର ପ୍ରିୟ ଯୁବକ ଦେଶବାସୀ । ହେ ମୋ'ର ଜାତିର ପିଲାମାନେ ! ନିଜ ଜାତିର ମଙ୍ଗଳ ପାଇଁ ଚେଷ୍ଟା କର, ଯେମିତିକି ତୁମକୁ ସେଇ ବୁଢ଼ାଟି ପରି ଅନୁତାପ କରିବାକୁ ନ ପଡ଼େ । ଆମ ବେଳକାଳ ତ ସରିଆସିଲାଣି । ଏବେ ଭଗବାନଙ୍କୁ ପ୍ରାର୍ଥନା କେହି ଜଣେ ଯୁବକ ଜାଗି ଉଠୁ ନିଜର ଓ ଜାତିର କଲ୍ୟାଣ ପାଇଁ କାମ କରୁ । ହେ, ସର୍ବଶକ୍ତିମାନ !

*ଭାଷାନ୍ତର : ଜ୍ଞାନପ୍ରକାଶ ମହାପାତ୍ର*



ପ୍ରଥମ ତାମିଲ କାହାଣୀର ସ୍ରଷ୍ଟା ଶ୍ରୀ ବ.ବେ.ସୁ.ଆୟାରଙ୍କ ଜନ୍ମ ତାମିଲନାଡୁର ତିରୁଚି ଜିଲ୍ଲାର ବରକନେରୀ ନାମକ ଗ୍ରାମରେ ୧୮୮୧ ମସିହାରେ । ଶିକ୍ଷା ଶେଷ କରିବା ପରେ କିଛିକାଳ ଓକିଲାତି ଓ ଲଣ୍ଡନ ଯାଇ ବାରିଷ୍ଟରୀ ସେ କରିଥିଲେ । ବୀର ସାବରକରଙ୍କ କ୍ରାନ୍ତି ଆନ୍ଦୋଳନରେ ଅନୁପ୍ରାଣିତ ହୋଇ ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧୀ କ୍ରାନ୍ତିକାରୀ ପାଲଟି ଯାଇଥିଲେ । ପରେ ଭାରତକୁ ଫେରି ଶ୍ରୀ ଅରବିନ୍ଦ, କବିବର ଭାରତୀ ପ୍ରଭୃତିଙ୍କ ପରି କ୍ରାନ୍ତି ଛାଡ଼ି ସାହିତ୍ୟ ସାଧନାରେ ମଜି ଯାଇଥିଲେ । କମ୍ବ-ରାମାୟଣର ବାଲକାଣ୍ଡ ସଂପାଦନ ସହ 'କମ୍ବନ ନିଲୟମ୍' ନାମକ ପ୍ରକାଶନ ସଂସ୍ଥାର ଆରମ୍ଭ କରିଥିଲେ । ୧୯୧୭ ମସିହାରେ ତାଙ୍କ ପ୍ରଥମ କାହାଣୀ ସଂଗ୍ରହ 'ମଂଗୈୟର କରସିର ପ୍ରେମ' ପ୍ରକାଶିତ ହୋଇଥିଲା । ଏହି ସଂକଳନର କାହାଣୀ 'କୁଲଉଙ୍ଗକରେ ଅରସମରମ୍' (ପୋଖରୀ ହୁଡ଼ାର ପିପ୍ପଳ) ହିଁ ତାମିଲ ସାହିତ୍ୟର ପ୍ରଥମ ମୌଳିକ କାହାଣୀ ଭାବରେ ସ୍ୱୀକୃତ ।

# ପୋଖରୀ ହୁଡ଼ାର ପିପଳ

ମୁଁ ସାଦା ଗଛଟିଏ । କିଂତୁ, ଅଂଗେ ନିଭା କଥା ଯଦି କହି ବସିବି, ଚବିଶ ଘଂଟା ବି କିଛି ନୁହଁ । ନିଜ ଆଖିରେ କେତେ ଘଟଣା ମୁଁ ନ ଦେଖିଛି । କେତେ କଥା ନ ଶୁଣିଛି ! ତମ ବୁଢ଼ୀ ମା'ର ବୁଢ଼ୀ ମା'କୁ ନଇଁ ଚାଲୁଥିବାର ଦେଖିଛି ! ହସ ନାଇଁ - ଶଏ ବର୍ଷ ତଳର କଥା କହୁଛି । ତମ ଆଈ-ପଣି ଆଈ କଳସୀ କାଖେଇ ପୋଖରୀ ତୁଠକୁ ଆସୁଥିଲେ, ପାଣି ପାଇଁ ପୁଅଝିଅ କାଖେଇ ଆସୁଥିଲେ କେହି କେହି । ଆହା, କି ଡଉଲଡାଉଲ ଛନଛନିଆଁ ପିଲାମାନେ ! ପିଲାଙ୍କୁ ଖେଳିବାକୁ ଛାଡ଼ିଦେଇ, ମା'ମାନେ ଲୁଗା କାଚନ୍ତି । ତେଲହଳଦୀ ଲଗେଇ ଗାଧୁଆନ୍ତି । ସେଇଠି ପ୍ରକାଶବଲ୍ଲୀ ଗଛଟିଏ ଥାଏ । ମୋତି ପରିକା ଚକଚକିଆ ଫୁଲରେ ନହସୁଥାଏ । ପୋଖରୀ ମହକୁଥାଏ ଫୁଲ ମହକରେ । ହଜିଲା ଦିନର ସେ କଥାମାନ କେତେ ମିଠା ସତରେ !

ଏବେ କିଂତୁ, ଗଲାଦିନର କଥା ମୁଁ ଶୁଣଉନି । ଖୁସିବାସି ବେଳ ଦେଖି ଶୁଣେଇବି । ଏବେ, ଚାରିପାଂଚ ଦିନ ହେଲା, ରୁକ୍ମିଣୀ କଥା ଥରକୁ ଥର ମନେ ପଡ଼ି ଯାଉଛି । ପଂଦର ବର୍ଷ ବିତି ଗଲାଣି । କିଂତୁ କାଲି ପରି ଲାଗୁଛି । ତମ ଭିତରୁ କେହି ତାକୁ ଦେଖି ନ ଥବ । ସୁନାପିଚୁଳି ଝିଅଟେ । ତା'ର ହସିଲା ହସିଲା ମୁହଁ ମନେ ପଡ଼ିଲେ ଇମିତି ଲାଗେ, ଯିମିତି ମୋ ଆଗରେ ସେ ଛିଡ଼ା ହେଇଛି । ତା'ର ତୋଫା, ସୁନ୍ଦର କପାଳକୁ ଯେତେ ଦେଖିଲେ ବି ମନ ମାନେ ନାଇଁ ।

ଚନ୍ଦ୍ରପାଚଲୀ ଝିଅଟେ । ପଦୁଅଁ ନାଢ଼ ପରି କଅଁଳ ହାତଗୋଡ଼ । ନବମଲ୍ଲିକା ପରି ଢ଼ଉଲଢ଼ାଉଲ କଅଁଳ ଦେହ । ସବୁ ସୌନ୍ଦର୍ଯ୍ୟ ଯିମିତି ତା' ଆଖି ଦିଓଟିରେ ଖୁନ୍ଦି ହେଇଥିଲା । କେତେ ବଡ଼ ବଡ଼ ସ୍ନିଗ୍‌ଧ, ସ୍ନେହପୂର୍ଣ୍ଣ ଆଖି ! ନୀଳକଇଁ ଭରା ସରୋବରଟିଏ ଯିମିତି ! ଅମାବାସ୍ୟା ପୂଜା ସାରି, ମୋରି ପ୍ରଦକ୍ଷିଣା କରେ । ମୋରି ଶୁଖିଲା ଶାଖାମାନଙ୍କୁ ସ୍ନେହପୂରିତ ଚାହାଣିରେ ଚାହିଁରହେ । ଶୁଖିଲା ଅଂଗପ୍ରତ୍ୟଗଂରେ ବି ଶୀହରଣ ଖେଳିଯାଏ ସେତେବେଳେ । ମୋର ସ୍ନେହର ଝିଅ ରୁକ୍ମଣୀ ! ତୋ ପରି ଝିଅଙ୍କୁ କେଜାଣି କେବେ ଆଉ ଦେଖିବି ?

ପିଲାଟି ଦିନରୁ, ଜୀବନର ଶେଷ ଘଡ଼ିକ ପର୍ଯ୍ୟନ୍ତ, ଇମିତି ଦିନଟିଏ ମନେ ନାଇଁ, ଯଉଦିନ ସେ ପୋଖରୀକୁ ଆସିନି । ଫି'ଦିନ ଦେଖୁଥିଲି ତାକୁ । ମୋ ଛାଇରେ ଖେଳେ । ପିଲାଙ୍କୁ ମୁଁ ଭାରି ଭଲପାଏଁ । ସୁନାପିଚୁଳି ରୁକ୍ମିଣୀ ଥିଲା ବୋଲି, ଏ ଝିଅମାନଙ୍କ ହସଖୁସି ଆହୁରି ଭଲ ଲାଗୁଥିଲା ମୋତେ । ଗାଆଁଟା ଯାକର ଗେଲବସରିଆ ଥିଲା ଝିଅଟି । ତା'ଦିହରେ ଟିକିଏ ବି ଖରା ପଡ଼ିବାକୁ ଦଉ ନଥିଲି । ସୂର୍ଯ ଦେବତାଙ୍କ ଦର୍ଶନମାତ୍ରେ ରୁକ୍ମିଣୀ ମୋର ମନେ ପଡ଼ିଯାଏ । ତା' ଆସିବା ବାଟକୁ ଏକଲୟରେ ଚାହିଁ ରହିଥାଏଁ ।

ରୁକ୍ମିଣୀର ପିତା କାମେଶ୍ୱର ଆୟର ବେଶ୍ ସଂପନ୍ନ ବ୍ୟକ୍ତିଥିଲେ । ଘରଦ୍ୱାର, ଧନଦଉଲତ, କାହିଁରେ ଉଣାନାଇଁ । ବଜାରକୁ ନୂଆ ଜିନିଷଟେ ଆସିଲେ, ରୁକ୍ମିଣୀ ଲାଗି ନେଇ ଆସିବାକୁ ଭୁଲୁ ନଥିଲେ । ହୀରାନୀଳାସୁନାର ଦାମୀ ଅଳଂକାରରେ ଲଦି ହେଇଥାଏ

ଝିଅଟି । ରୁକ୍ମିଣୀର ବଅସ ବଢ଼ି ହେଲା ଦଶ । 'ଯାତ୍ରା' ସମୟରେ ଟା' ପାଇଁ ରେଶମ ଘାଗରା ଆଉ ସିଲ୍‌କ ଓଢ଼ଣୀ ନେଇ ଆସିଥିଲେ ଟା' ବାପା । ନୂଆ ପରିଧାନ ଭିତରେ ଅଳଂକାର ବିଭୂଷିତା ରୁକ୍ମିଣୀର ସୌନ୍ଦର୍ଯ୍ୟ କାହିଁ କେତେ ଗୁଣ ବଢ଼ିଯାଇଥାଏ ସେଦିନ । ମୁଁ ତ ତାକୁ ଦେଖି ଆତ୍ମବିସ୍ମୃତ ହୋଇଯାଇଥିଲି । ହଁ, ଟା' କଂଠସ୍ୱର କଥା ଏଯାଏଁ କହିନି । ଟା' କଂଠସ୍ୱର ଆଗରେ କୋଇଲି କ'ଣ ? ଟା କଣ୍ଠସ୍ୱର ସ୍ୱର୍ଣତଂତ୍ରୀର ଝଂକାର ପରିଥିଲା ।

ପ୍ରନିଅଁ ପରବରେ ଶୁଣିଛି ଟା' ଗୀତ । ସେଇ ମଧୁର ମାଦକ ସ୍ୱର ମୋ କାନରେ ଏବେ ବି କଂପନ ସୃଷ୍ଟି କରୁଛି ।

ଭାରି ଭଲ ଝିଅଟେ ଥିଲା । ସଭିଙ୍କ ସାଥୀରେ ହସଖୁସି ବ୍ୟବହାର । ସାନବଡ଼ ଭେଦାଭେଦ ନାହିଁ । ଅଭାବଗ୍ରସ୍ତ ଲୋକଙ୍କ ପାଇଁ ଟା' ହୃଦୟରେ ଦରଦ ଥିଲା ସବୁଠୁ ବେଶୀ । ଅଂଧ, ପଂଗୁ, ଭିଖାରିଙ୍କୁ ଦେଖିଲେ, ଆଖିରୁ ଟା'ର ଲୁହ ଗଡ଼ିଯାଉଥିଲା । ଅଧିକ କହିବି କ'ଣ ଟା'କଥା ମନେ ପଡ଼ିଲେ, ପହିଲି ଆଷାଢ଼ର ଶୀତଳ, ସରସ, ଅଲୌକିକ ଆନନ୍ଦଟିଏ ଅନୁଭୂତ ହୁଏ ।

ହାୟ ! ମୋର ପରାଣ ପିଚୁଳିର ଇମିତି ଦୁର୍ଦ୍ଦଶା ହେଲା କାହିଁକି ? ମୋର ସବୁ ସ୍ୱପ୍ନ ମାଟିରେ ମିଶିଗଲା କାହିଁକି ? ବିଧାତା ଏତେ ନିର୍ଦ୍ଦୟ କାହିଁକି ? ନା, ନା, ମଣିଷର ଅବିବେକିତା ପାଇଁ ଭଗବାନଙ୍କୁ ଦୋଷିବି କାହିଁକି ?

ବାରବର୍ଷ ବଅସରେ, ଗାଁ'ର ମଣିମୟ (ମୁଖିଆ) ରାମସ୍ୱାମୀ ଅୟରଙ୍କ ପୁଅ ନାଗରାଜ ସହ ରୁକ୍ମିଣୀର ବାହାଘର ହେଲା । ଭାରି ଜାକଜମକରେ । ସର୍ବାଳଂକାର ପରିହିତା ରୁକ୍ମିଣୀ, ସଖୀମେଳରେ, ଶୋଭାଯାତ୍ରାରେ ଯେତେବେଳେ ଗାଁ,ଦାଣ୍ଡକୁ ଆସିଲା, ବିଦ୍ୟୁଲ୍ଲତା ପରି ଟା'ର ଆଖିଝଲସା ରୂପ ଦେଖି ମୁଁ ସ୍ତବ୍ଧ ହେଇଗଲି ।

କାମେଶ୍ୱର ଅୟର, ଝିଅକୁ ଅଳଂକାର, ବସ୍ତ୍ର,ବଂସାବାସନାଦି ମନଭରି ଦେଇଥିଲେ । ବାହାଘର ପରେ ରୁକ୍ମିଣୀକୁ ଟା'ଶାଶୁ ପ୍ରାୟ ଘରକୁ ଡ଼ାକି ନିଅନ୍ତି । ଆଦରରେ ମୁଣ୍ଡ କୁଣ୍ଡେଇ ଦିଅନ୍ତି । ମଥାରେ ଫୁଲ ଖୋଷି ଦିଅନ୍ତି । ପ୍ରିୟ-ପରିଜନ ଘରକୁ ଗଲାବେଳେ ରୁକ୍ମଣୀର ମାଁ, ରୁକ୍ମିଣୀକୁ ସାଙ୍ଗରେ ନେବାକୁ ଭୁଲନ୍ତି ନାହିଁ । ରୁକ୍ମଣୀର ସ୍ୱାମୀ ନାଗରାଜ ସୁନ୍ଦର ସୁଶୀଳ ପିଲା । ସୋ ମାଡ୍ରାସରେ ପଢୁଥିଲା । ସମସ୍ତଙ୍କ ମୁହଁରେ ଏଇ କଥା- ''ଯୋଡ଼ି ଠିକ୍ ହୋଇଛି'' ରୂପ ସୌନ୍ଦର୍ଯ୍ୟ ବର୍ଦ୍ଧି ଓ ଧନ ସବୁଦୃଷ୍ଟିରୁ ଏକୁ ଆରକୁ ବଳି ।

ତିନି ବର୍ଷ ବିତିଗଲା । ଏଇ ତିନବର୍ଷ ଭିତରେ କେତେବଡ଼ ଅନର୍ଥ ହୋଇଯାଇଥିଲା । କାମେଶ୍ୱର ଅୟରଙ୍କ ଦଶା ଖୁବ୍ ଶୋଚନୀୟ ହୋଇ ଯାଇଥିଲା । ଶୁଣିଚି, ଆର୍ଥନାଟ କମ୍ପାନୀରେ ସେ ତାଙ୍କର ସବୁ ରକମ ଜମା ରଖିଥିଲେ । ଆମ ଦେଶ ଲୋକଙ୍କର ଚାରିକୋଟି ଟଙ୍କାକୁ ସେ ବିଦେଶୀ କମ୍ପାନୀ ହଠାତ୍ ହଜମ କରିଦେଲା........... ବାସ ଗୋଟିଏ ଦିନରେ ଲକ୍ଷପତି କାମେଶ୍ୱର ଅୟର ରାସ୍ତାର ଭିକାରୀ ପାଲଟି ଗଲେ । ରୁକ୍ମିଣୀର ମା' ମୀନାକ୍ଷୀ ପିନ୍ଧିଥିବା ଅଳଂକାର ଟକ ଖାଲି ରହିଲା । ବାକି, ପୈତୃକ ସଂପତ୍ତି, ଘର, ଜମିବାଡ଼ି ବିକି, କାମେଶ୍ୱରଙ୍କୁ ଋଣ ପରିଶୋଧ କରିବାକୁ ପଡ଼ିଲା । ନାଳପାଖରେ ଥିବା କୁପ୍ପୁସ୍ୱାମୀଙ୍କ ଘରେ ଆସି ସେ ଆଶ୍ରୟ

ନେଲେ । ଲକ୍ଷ୍ମୀ ସ୍ୱରୂପିଣୀ, ଶାଂତ ସ୍ୱଭାବ ସଂପନ୍ନା ମୀନାକ୍ଷୀ ଏ ଦୁଃସ୍ଥିତିକୁ ସହଜରେ ଆଦରି ନେଲେ । ଏବେ ଦିନ ସେ ସୁଖଶାଂତିରେ ଜୀଇଲେ । ପ୍ରଭୁ କେତେ ପ୍ରାଚୁର୍ଯ୍ୟ ଭରିଦେଇଥିଲେ ତାଙ୍କ ଜୀବନରେ । ସେ'ଇ ନେଇଗଲେ ସବୁ । ଆଉ କ'ଣ ? ରୁକ୍ମିଣୀ ଆଉ 'ସିଏ' ଭଲରେ ଥାନ୍ତୁ । ମୋର ଆଉ କିଛି ଲୋଡ଼ା ନାହିଁ । କିଛି ଅଭାବ ନାହିଁ । ପୁଷମାସରେ, ରୁକ୍ମିଣୀକୁ ଶାଶୁଘର ପଠାଇ ଦେଲା ପରେ ଆଉ ଚିନ୍ତା କ'ଣ ? ଯାହା ଯିମିତି ମିଳିଲା, ଖାଇ, ଭଗବାନଙ୍କ ନାଁ' ନେଇ ପଥାକଥା ବାକି ଦିନଟକ କାଟି ଦେବା କଥା ।'' -ଏଇୟା କହି, ନୂଆ ଜୀବନଧାରାରେ ନିଜକୁ ଖାପ ଖୁଏଇବାର ଚେଷ୍ଟା କରନ୍ତି ମୀନାକ୍ଷୀ ।

କାମେଶ୍ୱର ଆୟରଙ୍କ ହାତରୁ ସବୁଟକ ଚାଲିଯାଇଛି । ତାଙ୍କ ଅବସ୍ଥା ସୁଧୁରିବାର ଆଶା ଆଉ ନାହିଁ । ଏତକ ଜାଣି ସାରିଲା ପରେ, ରାମସ୍ୱାମୀ ଆୟରଙ୍କ ସବୁ ସ୍ନେହଶ୍ରଦ୍ଧାରେ ଭଟା ପଡ଼ିଗଲା । ଆଗ, ପ୍ରାୟ ଆସି କାମେଶ୍ୱରଙ୍କୁ ସେ ଭେଟି ଯାଉଥିଲେ । ରାସ୍ତାରେ କେଉଁଠି ଦେଖାହେଲେ, ପାଂଚଦଶ ମିନିଟ ଖୁସିଗପ ହେଉଥିଲା । ଏବେ, କାମେଶ୍ୱରଙ୍କୁ ଦେଖିଲା ମାତ୍ରେ, ବାଟ ଭାଂଗି ସେ ଇମିତି ଦୂରେଇ ଯା'ନ୍ତି, ଯିମିତି ବିଶେଷ ଜରୁରି କାମ ଅଛି । ରାମସ୍ୱାମୀଙ୍କ ପତ୍ନୀ ଜାନକୀ ବି ମୀନ କ୍ଷୀ ସହ ମିଳାମିଶା ବନ୍ଦ କରିଦେଲେ । ମୀନାକ୍ଷୀ-କାମେଶ୍ୱର ଏପ୍ରତି ଧ୍ୟାନ ଦେଇ ନଥିଲେ । କିନ୍ତୁ, ରୁକ୍ମିଣୀ ପ୍ରତି ଯେତେବେଳେ ରାମସ୍ୱାମୀ ଦଂପତିର ବିମୁଖତା ପ୍ରକାଶ ପାଇଲା, ମୀନାକ୍ଷୀ-କାମେଶ୍ୱର ଭାରି ଦୁଃଖିତ ହେଲେ । ଅର୍ଥନାଟ ଦିବାଳିଆ ହେବା ଆଗରୁ, ପ୍ରତି ଶୁକ୍ରବାର, ଚାକରାଣୀ ପଠେଇ, ଜାନକୀ ରୁକ୍ମିଣୀକୁ ନେଇ ଆସୁଥିଲେ । ନିଜ ହାତରେ ବହୁକୁ ସଜେଇ, ସଂଜବେଳେ ଅଖିଳେଶ୍ୱରୀ ଦର୍ଶନକୁ ଯାଆନ୍ତି । କିନ୍ତୁ ଅର୍ଥନାଟ-ଦିବାଳିଆ ହେବା ଖବର ପାଇଲାମାତ୍ରେ, ଜାନକୀଙ୍କ-ବ୍ୟବହାର ପୂରା ବଦଳିଗଲା । ସେଇ ଶୁକ୍ରବାର ଦିନ ହିଁ, ଚାକରାଣୀ ଜରିଆରେ ଖବର ପଠେଇଲେ, ଅଧିକ କାମ ହେତୁ ସେଦିନ ମଂଦିର ଯାଇ ପାରିବେ ନାହିଁ । ଆଗ ଶୁକ୍ରବାର ରୁକ୍ମିଣୀକୁ ଡ଼କେଇବେ । ପୁଉଣି ଶୁକ୍ରବାର ଆସିଲା । କିନ୍ତୁ, ରାମସ୍ୱାମୀ ଘରୁ ଚାକରାଣୀ ବା କିଛି ଖବର ଆସିଲା ନାହିଁ ।

ଦିନ ଗଡ଼ି ଚାଲିଲା । ଗାଆଁରେ କିସମ କିସମ କଥା ଶୁଣାଗଲା । ଯେତେ ସବୁ ଗୁଜବ, କାନକୁହା କଥା ଶୁଣାଗଲା ଗାଧୁଆ ତୁଠରେ । ହଁ, ଭାଁ, ଗୋଟେ ଦି'ଟା ଶବ୍ଦ ମୋ ପାଖରେ ବି ପହଁଚେ । ଇମିତି କାନକୁହା ଗୋପନ କଥା ଅନର୍ଥର କାରଣ ହୁଏ । ଏଣୁ, ମୁଁ ଆତଂକିତ ହେଇ ଯାଏଁ ।

ସେଇ ଶବ୍ଦମାନଙ୍କୁ ଯୋଡ଼ି ଯାଡ଼ି ଦେଖିଲାରୁ ଗୁମର ଫିଟିଲା । ରାମସ୍ୱାମୀ ଆଉ ଜାନକୀ, ପୁଅ ଲାଗି ଆଉ ପାତ୍ରୀଟେ ଠିକ୍ କରି ସାରିଥିବା ଶୁଣି ମନ ମୋର ଅଧିର ହୋଇଉଠିଲା । ହାୟ, ଇମିତି ଦୁଷ୍କର୍ମ କରିବାକୁ ଏ ନରାଧମ ମାନଙ୍କର ମନ ବଳିଲା କିମିତି ? ପାପିୟସୀ ଜାନକୀ, ଫୁଲ-ସୁକୁମାରୀ ରୁକ୍ମିଣୀ କ'ଣ ତୋର ଝିଅପରି ନୁହେଁ ? କ'ଣ ସେ ବିଗାଡ଼ିଥିଲା ତୋର ? ଯାହାକୁ ଦେଖିଲେ, ପାଷାଣ ତରଳିଯିବ, ତା'ର ଅନିଷ୍ଟ କରିବାକୁ ମନ ତୋର ବଳିଲା କିମିତି ? ରୁକ୍ମିଣୀ ଦୁଃଖରେ ମୋ ମନର ଅବସ୍ଥା ଯଦି ଏଇୟା, ସେଇ ନିସ୍ପାପ କଳିକା ଆଉ ତା' ବାପ-ମା'ଙ୍କ ଅବସ୍ଥା କ'ଣ ହେଉ ନଥିବ ।

ଏବେ ଖାଲି ନାଗରାଜ ଉପରେ ଭରସା । ମାଡ୍ରାଜରେ ପଢୁଥାଏ । ମୃଗୁଶିର

ଆସିଲା । ମୁଁ ଗଣୁଥାଏଁ । ଶେଷରେ ସିଏ ବି ଆସିଗଲା । ଗାଆଁକୁ ଫେରିଲା ଦିନ ପ୍ରଫୁଲ୍ଲ ଦେଖାଯାଉଥାଏ । ଆଗଭଳି ହସଖୁସି, ଥଟ୍ଟା ପରିହାସ ! ହେଲେ, ଦିନ କେତୋଟି ଭିତରେ ସିଏ ବି ବଦଳିଗଲା । ମା'-ବାପ ମିଶି ବିଷ ଭରିଦେଲେ ତା' ମନରେ । ପାଣି ମାଡ଼ ଖାଇ ଖାଇ ପଥର ବି ଘଷିଯାଏ ବୋଲି ଲୋକେ କହନ୍ତି । ତା'ର ଅଲଗା ଭାବ ଦେଖି, ମୋର ସବୁ ଆଶା ତୁଟିଗଲା । ଖାଲି ତା'ରି ଉପରେ ଭରସା ଥିଲା । ହେଲେ, ସିଏ ବି ଏବେ.......।

ମାସକ ପରେ ସବୁ କଥା ଜଣା ପଡ଼ିଗଲା । ଶୁଣାଗଲା, ପୂର୍ବ ଦିଗର କୋଉ ଝିଅଟିଏ ! ଚାରିଲକ୍ଷ ଟଂକାର ସଂପତ୍ତି ବାଲା ବାପର ଅଲିଅଳି ଝିଅ । ଭାଇ ଭଉଣୀ କେହି ନାହାନ୍ତି । ସେ ଯା' ହେଉ, ରାମସ୍ୱାମୀ ପରିବାରକୁ ଦି'ଲକ୍ଷ ଫାଇଦାଟେ ହେବାର ଥାଏ ।.... ଏ କଥାମାନ କାନରେ ପଡ଼ି ଭାରି ଅସ୍ଥିର କରୁଥାଏ ମୋତେ । ହେଲେ କରିବି କ'ଣ ? ଛାତିକୁ ପଥର କରି ସବୁକଥା ଶୁଣିବାକୁ ପଡୁଥାଏ ।

ଚର୍ଚ୍ଚା ଇମିତି ଚାଲିଥାଏ ଗାଁ'ଟା ସାରା । ଦିନବେଳା ବାହାରକୁ ଆସିବା ବନ୍ଦ କରିଦେଲା ମୀନାକ୍ଷୀ । ପାହାନ୍ତା ପହରୁ ଗାଧୁଆ ସାରି ପାଣି ନେଇ ଚାଲିଯାଏ । ତା'ର ମଉଳା ଚେହେରା ଦେଖି ମୋର ଭାରି ଦୟା ହେଲା । ଘରଦ୍ୱାର, ଧନଦଉଲତ, ସବୁ ଯାଇ ସାରିଥିଲା । ମଂଗଳସୂତ୍ର ଛଡ଼ା କିଛି ନ ଥିଲା ମୀନାକ୍ଷୀ ପାଖରେ । ସେଲାଗି ଟିକିଏ ବି ଚିନ୍ତା ନଥିଲା ତା'ର ଏଇ ଦୁର୍ଦ୍ଦିନରେ ଟିକିଏ ବି ସମବେଦନା ନ ଜଣାଇ, ପୁଅ ବାହାଘର ପ୍ରସ୍ତୁତିରେ ଲାଗିପଡ଼ିଥାଏ ଜାନକୀ । ସେଇ ଦୁଶ୍ଚିନ୍ତାରେ ଖାଲି ଦିନରାତି ଜଳିଯାଉଥାଏ ମୀନାକ୍ଷୀ ।

ବିଚରା ରୁକ୍ମିଣୀକୁ କେତେ ବଡ଼ ଆଘାତ ପହଞ୍ଚି ନଥିବ ! ବାହାଘର ଥିର ହେଇଗଲା ଶେଷରେ । ଝିଅଘର ଆସି ଲଗ୍ନ ପତ୍ରିକା ଦେଇଗଲେ । ମାଂଗଳିକ ନାଦସ୍ୱର ବାଜିଲା । ଛାତି ମୋର କରତି ହେଇଗଲା । ରୁକ୍ମିଣୀ ଆଉ ମୀନାକ୍ଷୀ ପ୍ରାଣକୁ ତାହା କେତେଦୂର ଆଘାତ ଦେଇ ନଥିବ !

ନାଗାରାଜର ନିର୍ମମତା ମୋ ଆଖିରୁ ଲୁହ ଗଡ଼େଇ ଚାଲିଲା ଫି ଦିନ । ପ୍ରତି କ୍ଷଣ ଦାରୁଣ ଦୁଃଖରେ ଦଗ୍ଧ ହେଲି । ଗ୍ରୀଷ୍ମ ଶେଷର ବର୍ଷା ପରି ଖବରଟିଏ ଆସି ପହଂଚିଲା ଏତିକି ବେଳେ । ଶ୍ରୀନିବାସ ଆସୁଛି । ଶ୍ରୀନିବାସ, ନାଗରାଜର ପଢ଼ାସାଥୀ । କୋଡ଼ିଏ-ତିରିଶ ମାଇଲ ଦୂରରେ ତା' ଗାଆଁ । ନାଗରାଜର ବାହାଘର କଥା କେହି ତାକୁ ଜଣେଇ ଦେଇଥିଲା । ଡ଼ାକଗାଡ଼ି ଭଳି ଧାଇଁ ଆସିଥିଲା ଶ୍ରୀନିବାସ । ସେଦିନ ସଂଜବେଳେ ଦିହେଁ ପୋଖରୀ ହୁଡ଼ାକୁ ଆସିଲେ । ମନର ଗୋପନ କଥା ଫେଇବା ପାଇଁ ପୋଖରୀ ହୁଡ଼ାଠୁ ଭଲଜାଗା ଆଉ ନଥିଲା । ଶ୍ରୀନିବାସ ହଠାତ୍ ପଚାରିଲା - ଯାହାସବୁ ଶୁଣିଲି, ସେସବୁ କ'ଣ ସଚ ? '' ନାଗରାଜ କହିଲା, ''ବାପ-ମା' କଥା ପକ୍କା କରି ଦେଲେଣି । ମୁଁ ଆଉ କରିବି କ'ଣ ! ଶୁଣିଛି, ଝିଅଟି ଭାରି ସୁନ୍ଦରୀ । ତା' ବାପା ବି ତା' ନାଆଁରେ ଲକ୍ଷେ ଟଂକାର ସଂପତ୍ତି ଲେଖିଦେଇଛନ୍ତି କୁଆଡ଼େ । ଘରକୁ ଆସୁଥିବା ଲକ୍ଷ୍ମୀକୁ ହତାଦର କରିବା କାହିଁକି ? ନୁହଁ ?''

ନାଗରାଜ କଥା ଶୁଣି ଶ୍ରୀନିବାସ ମୁହଁରୁ ପାଣି ଉଚୁରିଗଲା । ଧର୍ମ-ନ୍ୟାୟର ଦ୍ୱାହି ଦେଇ ପାଖାପାଖି ଅଧଘଂଟା ବୁଝେଇଲା ନାଗରାଜକୁ - ''ଅଗ୍ନିକୁ ସାକ୍ଷୀ ରଖି

ଦେଇଥିବା କଥାର କ'ଣ କିଛି ମୂଲ୍ୟ ନାହିଁ ? ସେ ସବୁକୁ ଭୁଲିଯାଇ, ନିସ୍ପାପ, ନିର୍ଦ୍ଦୋଷ ଝିଅଟାର ଜୀବନକୁ ଛାରଖାର କରିଦେଇ ପାରିବୁ ?''

ନାଗରାଜ କହିଲା, ''ଶ୍ରୀନିବାସ, ମଜା କରିବାକୁ ଖାଲି ମୁଁ ଏଇୟା କହିଥିଲି । ଧନ ଲୋଭରେ ଇମିତି ନୀଚକାମ, ମୁଁ କରିପାରିବି ବୋଲି ତୁ ଭାବି ପାରିଲୁ ? ମୁଁ'ତ କଥାକୁ ଗୋପନ ରଖିବାକୁ ଚାହୁଁଥିଲି । ହେଲେ, କଥା ଏତେଦୂର ବଢ଼ିଗଲାଣି ଯେ, ଚୋଠି ଲୁଚେଇ ଲାଭ ନାହିଁ । ଗୋଟେ କଥା କିନ୍ତୁ କାହାରିକୁ କହିବୁ ନାହିଁ । ଏମାନେ ଆର୍ଯ୍ୟ ସଂସ୍କାର ଭୁଲି ଏତେ ତଳକୁ ଖସି ଆସିଲେଣି ଯେ, ତାଙ୍କ ମଥାରେ କଳଙ୍କର ଟୀକା ନ ପିନ୍ଧେଇ ମୁଁ ଛାଡୁନି । ମୁଁ ମନ୍ନାରକୋଇଲ ଯାଉଛି । ବାହାବେଦୀରେ ବସିବି । କିନ୍ତୁ ଠିକଣା ସମୟରେ ମାଂଗଲ୍ୟ ଧାରଣ କରିବି ନାହିଁ । ଅଦାଖିଆ ମାଂକଡ଼ ପରି ମୁହଁ କଳା କରି ସଭିଏଁ ଠିଆ ହେଇ ରହିବେ । ଭାଇ, ତୁ ଭାବି ପାରୁଛୁ, ରୁକ୍ମିଣୀ ଛଡ଼ା ଆଉ କା'ର ହାତ ଧରିବି ?''

ଏ କଥା କିଂତୁ ଶ୍ରୀନିବାସ ମନକୁ ପାଇଲା ନାହିଁ । କହିଲା - ''ତୁ ମନ୍ନାରକୋଇଲ ଚାଲିଗଲେ, ରୁକ୍ମିଣୀର ବାପ-ମା' ଅବସ୍ଥା କ'ଣ ହେବ, ଭାବିଛୁ ?'' - ଏଇ କଥା ଉପରେ ଦୁଇବଂଧୁ ଆଲୋଚନା ଚାଲୁ ରଖିଲେ କିଛିବେଳ । ସେତକ ମୁଁ ଠିକ୍ ଶୁଣି ପାରିଲି ନାହିଁ । ସେଦିନ ରାତିରେ ଆଖିକି ମୋର ନିଦ ଆସିଲା ନାହିଁ । ନାଗରାଜ ଭଳି ସତ୍‌ପାତ୍ରକୁ ନିଂଦା କରିଥିବା ହେତୁ, ନିଜକୁ ନିଜେ ଧିକ୍କାରିଲି । ଯା'ହେଉ, ରୁକ୍ମିଣୀର ଆଉ କିଛି ଚିଂତା ନାହିଁ ଏଣିକି ।

ଶନିବାର ରାତି । ସାଢ଼େ ନଅଟା ହେବ । ଗାଁ'ଟା ଯାକ ଶୋଇଗଲେଣି । ନାଗରାଜ ଏକେଲା ପୋଖରୀ ହୁଡ଼ାକୁ ଆସିଲା । ନିମଗଛ ତଳେ ବସିଲା ଭାରି ଚିଂତିତ ଜଣା ପଡୁଥାଏ । ଟିକକ ପରେ, ଦୂରରୁ ନାରୀମୂର୍ତ୍ତିଟିଏ ଆସୁଥିବା ଦେଖାଗଲା । ସିଏ, ପଛକୁ ଲେଉଟି ଲେଉଟି ଆସୁଥାଏ । ଆସି ନାଗରାଜ ଆଗରେ ଛିଡ଼ା ହେଲାରୁ ଜାଣିଲି, ସିଏ ରୁକ୍ମିଣୀ । ମୁଁ ତାବ୍‌ଦା ହେଇଗଲି । ଆଖି ମଳି, ଧ୍ୟାନ ସହକାରେ ଅନେଇ ରହିଲି ।

ପାଂଚ ମିନିଟ ବିତିଗଲା । ନାଗରାଜର କିଂତୁ ଧ୍ୟାନଭଂଗ ହେଲା ନାହିଁ । ଗଭୀର ଚିଂତା ଭିତରେ ବୁଡ଼ି ରହିଥାଏ ସେ । ରୁକ୍ମିଣୀ ବି ଛିଡ଼ା ହେଇଥାଏ ଅଚଳ ପ୍ରତିମାଟିଏ ପରି । ହଠାତ୍ ମଥାଟେକି ସାମ୍ନାରେ ରୁକ୍ମିଣୀକୁ ଦେଖିଲା ନାଗରାଜ । ସ୍ତବ୍ଧ ହେଇଗଲା । ପ୍ରକୃତିସ୍ଥ ହେଇ କହିଲା - ''ରୁକ୍ମିଣୀ, ଏତେ ରାତିରେ ଏକୁଟିଆ କିମିତି ?''

''ଆପଣ ଅଛନ୍ତି, ଏକୁଟିଆ କିମିତି ?'' - କହିଲା ରୁକ୍ମିଣୀ ।

''ସେଦିନ ତ ଏଯାଏଁ ଆସିନି ।'' - କହି ଚୁପ୍ ହେଲା ନାଗରାଜ ।

ଦି' ମିନିଟ ବିତିଗଲା । ଦିହେଁ ଛିଡ଼ା ହେଇଥାନ୍ତି ଚୁପ୍‌ଚାପ୍ । ନୀରବତା ଭାଂଗି ନାଗରାଜ କହିଲା - ''ଆମକୁ ଇମିତି ଦେଖିଲେ, ଲୋକେ ଆଜେବାଜେ ବକି ବସିବେ । ଚାଲ, ଘରକୁ ଫେରିଯିବା ।''

ରୁକ୍ମିଣୀ କହିଲା - ''ବୁଝି ପାରୁନି, କ'ଣ କହିବି ଆପଣଙ୍କୁ । କିମିତି କହିବି । ଗଲା ତିନିମାସ ଧରି, ମୋର ଦଶା ଯାହା ହେଲାଣି, ମା' ଅଖିଳେଶ୍ୱରୀ ଜାଣନ୍ତି । ଭାବିଥିଲି, ଆପଣ ମାନ୍ଦ୍ରାଜରୁ ଲେଉଟିଲେ ମୋର ସବୁ ଚିଂତା ତୁଟିଯିବ । ମାମୁଁ-ମାଇଁ ଯା' କରଂତୁ ପଛେ, ଆପଣ ମୋତେ ପର କରିବେ ନାହିଁ । ଆପଣ ହତାଦର କଲେ,

କା'ର ଭରସାରେ ଆଉ ଜୀଇବି ? ମନର ବଳ ମୋର ଭାଂଗି ଯାଇଛି । ଆପଣ ମୋତେ ନ ସଂଭାଳିଲେ, କହି ଦଉଛି.... ନିଶ୍ଚୟ ମୁଁ..'' କହୁଁ କହୁ କାନ୍ଦି ଉଠିଲା ରୁକ୍ମିଣୀ । ନାଗରାଜ କିନ୍ତୁ କିଛି କହିଲାନି । ଚୁପ୍‌ଚାପ୍ ବସିଥାଏ । ଟିକକ ପରେ ରୁକ୍ମିଣୀ ପଚାରିଲା - ''ଶୁଣିଛି, ବରଯାତ୍ରା କାଲି । ଆପଣ ଯାଉଛନ୍ତି ?''

କିଛି ମୁହୂର୍ତ୍ତର ଚିଂତା ପରେ ନାଗରାଜ କହିଲା - ''ହଁ... ଯିବି ତ ।'' - ଏତକ ଶୁଣି ଦୁଃଖରେ ଫାଟି ପଡ଼ିଲା ରୁକ୍ମିଣୀ । କଦଳୀ ପତ୍ର ପରି ଥରି ଉଠିଲା ତା'ଦିହ । ଲୁହ ଜକେଇ ଆସିଲା ଆଖିରେ । ନିଜକୁ ବଡ଼ କଷ୍ଟରେ ସଂଭାଳି କହିଲା - ''ମୋତେ ତା'ହେଲେ ତିରସ୍କାର କରିଦେଲେଣି ଆପଣ !''

ନାଗରାଜ କହିଲା - ''ତୁମକୁ ତିରସ୍କାର ! ନା' କେବେନୁହେଁ । ତଥାପି, ବାପ-ମା'ଙ୍କୁ ତୁଷ୍ଟ କରିବା କ'ଣ ମୋର କର୍ତବ୍ୟ ନୁହେଁ ? ସେଇଥି ଲାଗି, ତାଙ୍କ କଥା ରଖି ହିଁ କାଲି ଯାଉଛି । କିନ୍ତୁ, କହି ଦେଉଛି, ତୁମେ ଟିକେ ବି ଚିନ୍ତା କରିବ ନାହିଁ । ତୁମକୁ କେବେ ହତାଦର କରିବି ନାହିଁ ।''

ରୁକ୍ମିଣୀର ଧୈର୍ଯ ବଂଧ ଭାଂଗିଗଲା । କହିଲା - ''ଆପଣ ମୋତେ ହତାଦର କରିବେ ନାହିଁ, ଅଥଚ ବାପ-ମା'ଙ୍କର କଥା ରଖିବେ । ଏଥିରେ ମୋର ଆଉ କହିବାର କ'ଣ ଅଛି ? କ'ଣ ଆଉ ଗତି ଅଛି ମୋର !'' - ହତାଶ ହେଇ ବସିଗଲା ବିଚାରୀ ।

ଭାବନା ଭିତରେ ବୁଡ଼ିଗଲା ନାଗରାଜ । 'ବାହାଘର ହେବନି' ଛଡ଼ା ଆଉ କ'ଣ ଶବ୍ଦ ଅଛି ରୁକ୍ମିଣୀକୁ ସାନ୍ତ୍ୱନା ଦେଇପାରିବ ? ଏବେ ତାକୁ କିଛି କହିବା ଅବସ୍ଥାରେ ନଥିଲା ନାଗରାଜ । ରୁକ୍ମିଣୀ ହାତପାପୁଲିକୁ ନିଜ ହାତରେ ଧରି ଇମିତି ଆଉଁସି ଚାଲିଲା, ଯିମିତି କ୍ରନ୍ଦନରତ ଶିଶୁଟିକୁ ସାନ୍ତ୍ୱନା ଦେଉଛି । କ୍ରମେ ତା'ର ପିଠି ଓ ମଥାକୁ ଆଉଁସୁ ଆଉଁସୁ ହଠାତ୍ ଅଟକି କହିଲା - ''ୟେ କ'ଣ ଦଶା ହେଇଚି ତମର ରୁକ୍ମିଣୀ ? ତମର ସେ ମୁଲାଏମ୍ ବାଳ କାହିଁ ? ମୁହଁ ଦେଖି ତୁମର । ଆରେ ତମର ଆଖି ନାଲି ପଡ଼ିଯାଇଛି କିମିତି ? କାହିଁଗଲା ମୁହଁର ସେଇ ତେଜ ? ସୁନାଟା ପରା, ବିଶ୍ୱାସ କର, ତୁମର ଏ ଦଶା ଦେଖି ମୋର ଛାତି ଫାଟି ଯାଉଛି । ତୁମକୁ ମୁଁ ହତାଦର କରିବିନି ରୁକ୍ମିଣୀ । ଧୂଳିଘର ଖେଳଠୁ ଚାଲିଆସିଥିବା ଆମରି ସ୍ନେହସଂପର୍କକୁ କେବେ ଭୁଲିଯିବି ନାଇଁ । ଉଠ, ରାତି ଢ଼େର ହେଲାଣି ପରା, ଘରକୁ ଯିବା ।''

ରୁକ୍ମିଣୀ ବସିରହିଲା ସିମିତି । ତାକୁ ଏ ଅବସ୍ଥାରେ ଦେଖି ନାଗରାଜ ଆଖିରେ ଲୁହ ଜକେଇ ଆସିଲା । ଭାବିଲା, ଖୋଲି କହିଦେବ କି ସବୁକିଛି ! କହିଦେବ ?....ହାୟ, ସେତେବେଳେ କହି ଦେଇଥାନ୍ତା ଯଦି, କେତେ ଭଲ ହେଇଥାନ୍ତା ! କିନ୍ତୁ, ପରିକଳ୍ପିତ ଚମକାରିତା ପ୍ରଦର୍ଶନ ହିଁ ସେଦିନ ଥିଲା ତା'ପାଇଁ ବେଶି ମହତ୍ୱପୂର୍ଣ୍ଣ । ରୁକ୍ମିଣୀର କଅଁଳ, ଦୁର୍ବଳ ଶରୀରକୁ, ଆଂଜୁଳାଏ ଫୁଲ ପରି ସାଉଁଟି, ଛାତିରେ ଲଗେଇ କହିଲା ନାଗରାଜ - ''ରୁକ୍ମିଣୀ, କ'ଣ କରିବି ଆଉ ? ଉପାୟ କ'ଣ ?'' - କଣ୍ଠସ୍ୱର ତା'ର ଭାରି କରୁଣାପୂର୍ଣ୍ଣ ଥିଲା । ମୁହଁ ଟେକି ରୁକ୍ମିଣୀ ଅନେଇଲା ନାଗରାଜକୁ । ସେ ଚାହାଣିରେ ଯାହା ଥିଲା, ତା' ତୁମକୁ କହିବି କିମିତି ? ନଈର ପ୍ରଖର ସୁଅରେ ଭାସିଯାଉଥିବା ଲୋକଟି, ଦୂରରେ ଭାସୁଥିବା କାଠଗଣ୍ଡିକୁ ଦେଖି, ପ୍ରବଳ ଆଶାରେ ସମସ୍ତ ଶକ୍ତି ଲଗେଇ,

ତା’ପାଖକୁ ପହଁରି ଯାଇ ଦେଖେ ଯେ, ତା’ କାଠ ନୁହେଁ, ପାଳବିଣ୍ଡାଟିଏ । ସେତେବେଳେ ତା’ର ମାନସିକ ସ୍ଥିତି ଯାହା ହୁଏ, ଠିକ୍ ସେଇୟା ଥିଲା ରୁକ୍ମିଣୀର ଦଶା ।

ଅସୀମ ଯାତନା ଆଉ ଅପରିସୀମ ବେଦନା ଭରିଥିଲା ସେ ମର୍ମାହତ ଚାହାଣିରେ । ତଥାପି, ନାଗରାଜକୁ ନିର୍ବାକ୍ ଛିଡ଼ା ହେଇଥିବା ଦେଖି, ତା’ ବାହୁବଂଧନରୁ ନିଜକୁ ମୁକୁଳେଇ କହିଲା ରୁକ୍ମିଣୀ - “କହିବାକୁ ଆଉ କିଛି ନାହିଁ । ମୁଁ ମନାରକୋଇଲ ଯାଉନାହିଁବୋଲି କହିବାକୁ ଚାହାନ୍ତି ନାହିଁ ଅ ପଣ । ସବୁ ମୋର ଭାଗ୍ୟ ! ମୋର ପ୍ରାରବ୍ଧ ! ଇମିତି ଅସହାୟ ଅବସ୍ଥାରେ ମୋତେ ଛାଡ଼ିଦେଲେ ଆପଣ ! କା’ର ଭରସାରେ ବଂଚିବି ଆଉ ? ତଥାପି; ଆପଣଙ୍କ ପ୍ରତି ମୋର କିଛି ଅଭିଯୋଗ ନାହିଁ । ମୁଁ ଜାଣେ, ଏ କାମରେ ଆପଣଙ୍କର ସହମତି ନାହିଁ । ହେଲେ, ସବୁ ମୋର ଭାଗ୍ୟ । ମୋ ପିତାମାତାଙ୍କ ଦୁର୍ଦ୍ଦିନ ହିଁ ଏ କାମ ପାଇଁ ଆପଣଙ୍କୁ ପ୍ରେରିତ କରିଛି । ବାସ୍, ଏତିକି ମନେ ରଖିଥିବେ, ରୁକ୍ମିଣୀ ବୋଲି ଝିଅଟେ ଥିଲା, ଯିଏ ଆପଣଙ୍କୁ ବହୁତ ଭଲ ପାଉଥିଲା, ଆଉ ଜୀବନର ଶେଷ ମୁହୂର୍ତ୍ତ ପର୍ଯନ୍ତ ଆପଣଙ୍କ ସ୍ମୃତିକୁ ସାଇତି ରଖିଥିଲା ।” - ଏତକ କହି, ନାଗରାଜ ପାଦରେ ଲୋଟି, ଅବୋଧ ଶିଶୁଟିଏ ପରି କାନ୍ଦିବାକୁ ଲାଗିଲା ରୁକ୍ମିଣୀ ।

ରୁକ୍ମିଣୀକୁ ଚଟ୍‌ପଟ୍ ଉଠେଇ ନେଇ କହିଲା ନାଗରାଜ – “ପାଗଳୀ, ଏ ପାପକଥା ମନକୁ ଆଣନା । ହେଇ, ବର୍ଷା ପଡ଼ିଲାଣି । ଆକାଶସାରା ମେଘ ଢ଼ାଙ୍କି ଦେଲାଣି । ଝଡ଼ ଆସିଯାଇ ପାରେ । ଚାଲ, ଘରକୁ ଯିବା ।” - ରୁକ୍ମିଣୀର ହାତ ଧରି ଆଗେଇଲା ନାଗରାଜ । ଆକାଶରେ ଚାଂଦତାରା ଲୁଚିଗଲେଣି ମେଘ ଉହାଡ଼ରେ । ଗାଢ଼ ଅଂଧକାର ଚାରିଆଡ଼େ । ବିଜୁଳିର ଚମକ । କଳାମେଘକୁ କିଏ ତରବାରିରେ ହାଣିଦେଲା ପରି ଜଣାପଡୁଛି । ପରେ ପରେ ଆହୁରି ଗାଢ଼ ହେଇଯାଉଛି ରାତି-ଅଂଧାର । ମାଟି ଓ ଆକାଶକୁ ଦୋହଲେଇ ଦେଉଛି ଝଡ଼ । ଦୂର କେଉଁଠି, ମୂଷଳଧାରାରେ ହେଉଥିବା ବର୍ଷାର ଶବ୍ଦ ଆସୁରୀ ଗତିରେ ମାଡ଼ିଆସୁଛି । ଏ ପ୍ରଳୟଂକରୀ ଝଡ଼ବର୍ଷା, ନାଗରାଜ-ରୁକ୍ମିଣୀର କଥାବାର୍ତ୍ତା ମୋତେ ଠିକ୍ ଶୁଣେଇ ଦେଲା ନାହିଁ । ଦିହେଁ ଦ୍ରୁତଗତିରେ ବାହୁଡ଼ି ଯାଉଥାନ୍ତି । ବିଜୁଳି ଆଲୁଅରେ ଦେଖିଲି, ରୁକ୍ମିଣୀ ଫେରିବାକୁ ଚାହୁଁନି । କିନ୍ତୁ ନାଗରାଜ ତାକୁ ବୁଝା ସୁଝା କରି ଅଗତ୍ୟା ନେଇଯାଉଛି । ବତାସରେ ଭାସି ଆସି, ଗୋଟାକେତେ ଶବ୍ଦମାତ୍ର ମୋ କାନରେ ବାଜିଲା - “ମୁଁ ଜୀବନ ହାରିଦେବି.... ମା’ଙ୍କ ମନ ତୃପ୍ତ ହେବ...... କାହାରି ଆଉ..... ରହିବ ନାଇଁ.... ନା,ନା, ସିମିତି କୁହନା..... ଯାହା ଭାଗ୍ୟରେ ଲେଖାଅଛି, ହେବ... କିଛି ନହେଲେ, ସେ ଝିଅଟିକୁ ସୁଖରେ ରଖିବି..... ହୃଦୟ ଖୋଲି ମୁଁ ଆଶୀର୍ବାଦ କରୁଛି.... ସେଇ ଦିନ ଆପଣ ବୁଝି ପାରିବେ.... ମୋର ଅନ୍ତିମ ପ୍ରଣାମ.... ସେତେବେଳେ ଅପେକ୍ଷା କରିବେ....” - ମେଘର ଗର୍ଜନ ଆଉ ଝଡ଼ବର୍ଷା ହେତୁ ଆହୁରି କିଛି ଶୁଣାଗଲା ନାହିଁ ।

ତା’ ପରଦିନ ସିନ୍ଦୁରା ଫାଟିଲା । ବର୍ଷା ଥମି ଯାଇଥିଲା । ଆକାଶ ମେଘୁଆ ରହିଥିଲା ତଥାପି । ସାନ୍ତ୍ୱନା ଦେଲାବାଲା କେହି ନ ଥିବାରୁ କ୍ରନ୍ଦନରତା ଝିଅଟେ ପରି ଗୁମୁରି କାନ୍ଦୁଥିଲା ବତାସ । ମୋ ମନରେ ବି ଶାଂତି ନଥାଏ । ଆବୋରିବାର ଚେଷ୍ଟା ଯେତେ କଲେ ବି, ବ୍ୟାକୁଳତା ଆହୁରି ବଢୁଥାଏ । ବୁଝି ପାରୁ ନଥାଏଁ, ମୋ ମନ ଏତେ ଉଦାସ ଆଉ ଅସ୍ଥିର କାହିଁକି । ଏମିତି ଦୁଃଖାନୁଭୂତିର କାରଣ ଖୋଜୁଥାଏଁ, ହଠାତ୍ ମୀନାର ଚିତ୍କାର କାନରେ ବାଜିଲା - “ଆଲୋ, ଦେଖଲୋ, କା’ର ଶାଢ଼ୀଟିଏ ଭାସୁଛି...”

ସଂଗେ ସଂଗେ ସିଆଡ଼କୁ ଅନେଇଲି । ଏକେଲା ମୋର ନୁହେଁ, ଗାଧେଇବାକୁ ଆସିଥିବା ସବୁ ସ୍ତ୍ରୀ'ଙ୍କର ଦୃଷ୍ଟି ଓଟାରି ହେଇଗଲା ସେ ଆଡ଼କୁ । ଚପା ସ୍ୱରରେ କ'ଣ ସବୁ ଚର୍ଚା ଚାଲିଲା ତାଙ୍କରି ଭିତରେ । ମୋର ଧମନୀରେ ରକ୍ତପ୍ରବାହ ହଠାତ୍ ଥମିଗଲା ଯିମିତି । ବାପ-ମା'ଙ୍କୁ ଦୁଃଖର ସାଗରରେ ଭସେଇ, ରୁକ୍ମିଣୀ ଆତ୍ମବିସର୍ଜନ କରିଥିବା ଜାଣି, ମୁଁ ଚେତନ ଶକ୍ତି ହରେଇ ବସିଲି ।

ଚେତା ପାଇ ଦେଖିଲି, ପୋଖରୀରେ ଭାରି ଭୀଡ଼ ଜମିଯାଇଛି । ସବୁରି ମୁହଁରୁ, ରାମସ୍ୱାମୀ-ଜାନକୀ ପ୍ରତି ଗାଳି ବର୍ଷୁଥାଏ । ବାପ-ମା'ର ଜୀବନ ଧନ, ଗାଁ'ଟା ଯାକର ଶୋଭା ମୋର ସୁନାପିତୁଳି ଝିଅ ରୁକ୍ମିଣୀ ମୋର ହସଖୁସିକୁ ମାଟି କରି ଚାଲିଗଲା । ସେଇ ନବ ମଲ୍ଲିକାର ଶୀତଳ ଛାଇରେ ଶୋଇଦିଆଯାଇଥାଏ ତାକୁ । ହାୟ, ନବମଲ୍ଲିକା କଳି କେତେ ତୋଳିଥିବ ରୁକ୍ମିଣୀ ତା'ର କମଳକୋମଳ ହାତରେ । ତା'ର ମୃଦୁ ଚରଣ ସ୍ପର୍ଶ ପାଇନଥିବା ଥାନଟିଏ ନଥିଲା - ପୋଖରୀ ପାରୁଶରେ ଇମିତି ଗଛ, ଲତା ବା ଚାରାଟିଏ ନଥିଲା, ଯିଏ ତା'ର କର ସ୍ପର୍ଶ ସୁଖ ପାଇନି । ହାୟ, ଦାରୁଣ ଦୁଃଖରେ ଛାତି ମୋର ଫାଟି ପଡୁଛି । ରୁକ୍ମିଣୀର ସେଇ କଅଁଳ ହାତ, ପାଦ, ଶରୀର, ସବୁକିଛି ମଉଳି ଯାଇଛି । ଅଥଚ, ତା' ଚେହେରାର ଗାମ୍ଭୀର୍ଯ୍ୟ ଆଉ ସୌନ୍ଦର୍ଯ୍ୟ ସେମିତି ଉଜଳ ରହିଯାଇଛି । ମୁହଁରେ ତା'ର ଦୁଃଖ ଅବା ବ୍ୟଥାର ଲେଶମାତ୍ର ଚିହ୍ନ ନାହିଁ । ବରଂ ଅତିଶୟ ବିଲକ୍ଷଣ ଶାଂତି ବର୍ତମାନ ଅଛି ତା'ର ମୁଖ ମଂଡ଼ଳରେ ।

'ହେଇ, ନାଗରାଜ ଆସୁଛି, ନାଗରାଜ ଆସୁଛି' ବୋଲି ଭୀଡ଼ ଚିତ୍କାର କରିଉଠିଲା । ହଁ...ସତରେ.... ବ୍ୟସ୍ତ ବିବ୍ରତ ନାଗରାଜ ଧାଇଁ ଆସୁଛି... ହେଇ, ପହଂଚିଗଲା ନବମଲ୍ଲିକା ଛାଇରେ । ପିତା-ମାତା, ଜନ ସମୂହ, କାହାରି ଖିଆଲ ନ କରି ଚିତ୍କାର କରି ଉଠିଲା - ''ରୁକ୍ମିଣୀ, ମୋର ପ୍ରାଣପ୍ରିୟା, ଇଏ କ'ଣ କଲ ତୁମେ ?'' ଚିତ୍କାର ସହ ଧଡ଼୍କିନା ପଡ଼ିଗଲା ନାଗରାଜ !

ନିର୍ବାକ୍ ଛିଡ଼ା ହେଇ ରହିଲା ଜନ ସମୂହ । ଢ଼େର ବେଳଯାଏଁ ସିମିତି ପଡ଼ିରହିଥାଏ ନାଗରାଜ ! ରାମସ୍ୱାମୀ ଅୟର ବ୍ୟସ୍ତ ଭାବରେ ଧାଇଁ ଆସିଲେ । ନାଗରାଜ ମୁହଁରେ ପାଣିଛିଟା ମାରି ପଂଖା କଲେ । ଶେଷରେ ତା'ର ଚେତା ଫେରିଲା । ଅଥଚ, ଶବ୍ଦଟିଏ ବି ବାହାରିଲା ନାହିଁ ତା' ମୁହଁରୁ । ରୁକ୍ମିଣୀର ନିର୍ଜୀବ ଶରୀରକୁ ଚାହିଁ କହି ଚାଲିଲା - ''ପ୍ରିୟେ, ମୋର ସବୁ ଆଶାକୁ ମାଟିରେ ମିଶେଇ ଆଖି ବୁଜିଦେଲ । ନରାଧମ ମୁଁ । ମୋରି କାରଣରୁ ତୁମେ ଆତ୍ମବିସର୍ଜନ କଲ । ଶ୍ରୀନିବାସର ଭବିଷ୍ୟବାଣୀ ସତ ହେଲା । ମୁଁ ହିଁ ତୁମର ହତ୍ୟାକାରୀ । କାଲି ଯଦି ସବୁକଥା କହିଦେଇଥାନ୍ତି, ଏ ଦୁର୍ଗତି ହେଇ ନଥାନ୍ତା ।

ମୋର ଜୀବନରେ ଆଉ ଅଛି କ'ଣ !..... ରୁକ୍ମିଣୀ, ସବୁଦିନ ପାଇଁ ମୋତେ ଛାଡ଼ି ଚାଲିଗଲା...ସାଂସରିକ ଜୀବନରେ ମୋ ପାଇଁ ଆଉ ଅଛି କ'ଣ ! ମୁଁ ବି ସନ୍ୟାସୀ ଜୀବନ ଆଦରି ନେଉଛି ।'' - ଏତିକି କହି, କେହି ବାଧା ଦେବା ଆଗରୁ, ପିନ୍ଧା ଧୋତୀ-ଉତ୍ତରୀୟ ଚିରିଦେଲା । ବାପା-ମା' ପଥର ମୂର୍ତ୍ତି ପରି ଛିଡ଼ା ହୋଇଥାନ୍ତି । ସେମାନେ କିଛି କହିବା ଆଗରୁ, ତାଙ୍କ ଚରଣରେ ସାଷ୍ଟାଂଗ ପ୍ରଣିପାତ କରି, ତୀରବେଗରେ ସ୍ଥାନତ୍ୟାଗ କଲା ।

ସ୍ନେହର ପିଲାମାନେ, ମୋ ଝିଅ ରୁକ୍ମିଣୀର କରୁଣ କଥା ଇଏ । ଏ କଥାଟିକୁ ହେତୁ କରିଥିବ । ଦେଖିବ, ନାରୀହୃଦୟକୁ ଚମ ଦେଇ କୌଣସି ଦୁଃଖ ଯିମିତି ନ ପହଂଚେ । କଳ୍ପନାରେ ସୁଦ୍ଧା ନାରୀକୁ ଅସମ୍ମାନ କରିବ ନାହିଁ ।

*ଭାଷାନ୍ତର : ଜଗଦାନନ୍ଦ ଛୁରିଆ*



କହ୍ନେୟାଲାଲ ମାନେକଲାଲ ମୁନ୍‌ସୀ ଗୁଜୁରାଟୀ ସାହିତ୍ୟର ଜଣେ ବହୁମୁଖୀ ସର୍ବ ପରିଚିତ ବ୍ୟକ୍ତିତ୍ୱ । ଆଇନ, ରାଜନୀତି, ଇତିହାସ, ସଂସ୍କୃତି, ଧର୍ମ, ସାହିତ୍ୟ ପରି ବହୁ ବିଶାଳ କ୍ଷେତ୍ରଥିଲା ତାଙ୍କର କାର୍ଯ୍ୟ ପରିସର । ୧୯୧୨ରୁ ୧୯୭୦ ପର୍ଯ୍ୟନ୍ତ ଦୀର୍ଘ ୫୮ ବର୍ଷଧରି କହ୍ନେୟାଲାଲ ମାନେକଲାଲ ମୁନ୍‌ସୀ ୧୨୭ ଖଣ୍ଡ ପୁସ୍ତକ ଲେଖିଥିଲେ । ତାଙ୍କର ଏହି ବିଶାଳ ସାହିତ୍ୟକୃତିର ଅୟମାରମ୍ଭ କାହାଣୀରୁ । ଗୁଜରାଟୀ ଗଳ୍ପ ସାହିତ୍ୟର ପ୍ରଥମ ଗଳ୍ପ 'ଗୌମତି ଦାଦା କା ଗୌରବ' (ଗୌମତି ଜେଜେଙ୍କ ଗୌରବ) ୧୯୧୨ ମସିହାରେ ପ୍ରକାଶିତ ତାଙ୍କର ପ୍ରଥମ ଗଳ୍ପ ସଂକଳନ 'ମାରି କମଲା' (ମୋର କମଳା) ନାମକ ଗଳ୍ପ ସଂକଳନରେ ସ୍ଥାନୀତ ।

# ଗୌମତୀ ଜେଜେଙ୍କ ଗୌରବ

ସମାନତା କଥା ତ ସମସ୍ତେ କହନ୍ତି କିଂତୁ ଲୋକଶାସନ କଥା କହିଲାବେଳେ ଆମର ଜାତି ଅଭିମାନ ତଥା କୁଳର ଅଭିମାନକୁ କଣ ବାଦ ଦିଆଯାଇପାରେ ? ନୁହେଁ । ଯଦି ଏହା ଦୋଷ ହେବ ତେବେ ଏ ଦୋଷ ପ୍ରଶଂସନୀୟ । ''ମହାନ୍ ବ୍ୟକ୍ତିଙ୍କ ଅନ୍ତିମ କଳଂକ ଭଳି'' । ରାଜମାନ ସୁମତି ଶଂକରର ସକୁଟୁମ୍ବ ଏହି ଦୋଷରେ ଭୂଷିତ ହେଲେ ଆପତ୍ତି କଣ ? ଆଜିକାଲି ସବୁଠି କଣ ଅଛି ? ଲୋକେ ଦୁଇ ଚାରି ପୀଢ଼ିର କଥା କହନ୍ତି । ସୁମତି ତ ଶୁଦ୍ଧ ଋଗ୍‌ବେଦୀ ଆଶ୍ୱଲାୟ ଶାଖାର ଅତ୍ରେୟ ଗୋତ୍ରର ଉଚ୍ଚ ଅସ୍ପର୍ଶ୍ୟ ବ୍ରାହ୍ମଣ । ''ଅତ୍ରେୟସ ଗୋତ୍ରୋପ୍ନୋହଂ'' ଦିନକୁ ତିନିଥର ସ୍ମରଣ କରାଯାଏ । ବାପା, ଜେଜେ ଅନୁସୂୟା ଙ୍କ ଗର୍ଭରୁ ହିଁ ଜାତ ହୋଇଥିଲେ ଏହାର ପ୍ରମାଣ ଦର୍କାର । ଯେମିତି କୌଣସି ନଦୀ ଧରାପୃଷ୍ଠରେ ବୋହି ଗଲାବେଳେ ବୃକ୍ଷରାଜି ଦ୍ୱାରା ଆଚ୍ଛାଦିତ ହେଲେ ବି ତା'ର ମୂଳ ପର୍ବତରେ ହିଁ ଥାଏ ସେମିତି ଆମେ ମାନିନେଉ ଯେ ବଂଶ ପରଂପରା ହଜିଗଲେ ବି ମୂଳପୁରୁଷ ଅତ୍ରି ପର୍ଯ୍ୟନ୍ତ ଆମେ ଯାଇ ପାରିବା । ଯେତେବେଳେ ସେହି ଅତ୍ରି ବ୍ରହ୍ମା ବିଷ୍ଣୁ ମହେଶ୍ୱରଙ୍କୁ କୋଳରେ ଖେଳେଇଥିବା ନାରୀର ସ୍ୱାମୀ ହୁଅନ୍ତି ଆଉ ଯଦି ବ୍ରହ୍ମାଙ୍କ ପର୍ଯ୍ୟନ୍ତ ଦୃଷ୍ଟାନ୍ତ ପ୍ରମାଣିତ ହୋଇଯାଏ ତେବେ କାହାର ସତ୍‌ସାହସ ନାହିଁ ସୁମତିଶଂଙ୍କରର ବଂଶପରିଚୟ ସଂପର୍କରେ ସନ୍ଦେହ କରିବ । ଏହି ବଂଶ ଗୌରବ ସମ୍ମୁଖରେ ଚିନ୍‌ର ପଦଚ୍ୟୁତ ରାଜାଙ୍କ ବଂଶ ଗୌରବର ମଧ୍ୟ କୌଣସି ମୁକାବିଲା ନାହିଁ । ଆଉ ଆପଣ ଯଦି ସୁମତିର କାକା ତଥା ପିଉସୀଙ୍କୁ ଅତ୍ରି ଙ୍କ ସଂବଂଧରେ କଥାବାର୍ତ୍ତା କରିବାର ଶୁଣନ୍ତି ତେବେ ଆପଣଙ୍କୁ ବିଶ୍ୱାସ ହୋଇଯିବ ସତେ ଯେମିତି ବ୍ରହ୍ମା ବିଷ୍ଣୁ ରୁଦ୍ରଙ୍କୁ କୋଳରେ ଲୁଚେଇବା ସମୟରେ ସୁମତିର କାକା ତଥା ପିଉସୀ ଦ୍ୱାର ଆଢୁଆଳରେ ରହି ଅନୁସୂୟା ଜେଜେ ମାଁ ଙ୍କ ପରାକ୍ରମ ଦେଖୁଥିଲେ । କୌଣସି ଶୁଭ ପ୍ରସଂଗରେ ସାତୋଟି ଗୁଆ ରଖି ସପ୍ତର୍ଷିଙ୍କୁ ଆହ୍ୱାନ କରାଯାଉଥିଲାବେଳେ ସୁମତିର କାକା ବିମତି ଶଂକରଙ୍କ ଛାତି ଗର୍ବରେ ଫୁଲି ଉଠୁଥିଲା । ଅତ୍ରି ନାମଧାରୀ ଗୁଆ ଉପରେ ଚନ୍ଦନର ଚାରି ବୁନ୍ଦା ଅଧିକ ଛିଟ ତଥା ଫୁଲର ଦୁଇଟା ବଡ଼ ପାଖୁଡ଼ା ନ ପକେଇ ସେ ରହି ପାରୁ ନଥିଲେ । ଧୀରମତି ପିଉସୀଙ୍କ ଆଡ଼େ ଦେଖି ଅତ୍ରି ଗୁଆ ଆଡ଼କୁ ନିର୍ଦ୍ଦେଶ କରି ଯେମିତି ସେ କହୁଥିଲେ : ଇଏ ଆମର ଜେଜେ'' ।

କିଂତୁ ସୁମତି ଶଂକରର ଗର୍ବର ଅନ୍ୟ ଏକ କାରଣ ଥିଲା ଯାହା କି ସେ ଆଉ ତାଙ୍କ କୁଟୁମ୍ବର ସଦସ୍ୟମାନେ ଅନୁଚ୍ଚ କଂଠସ୍ୱରରେ କହୁଥିଲେ । ନ କହିଲେ ବି ଆଖିର ଭାଷାରୁ ବୁଝି ନେଉଥିଲେ । ପ୍ରଥମ କଥା ତ ଯେମିତି ସେମାନଙ୍କର ମତି ହିଁ ନ ଥିଲା । ତେଣୁ ପ୍ରତ୍ୟେକ ସଂତାନଙ୍କ ନାଁ ପଛରେ 'ମତି' ଲଗାଯାଉଥିଲା । ସୁମତିର କାକା ବିମତି, ପିଉସୀ ଧୀରମତି, ପିତା ଶଂକରମତି ଇତ୍ୟାଦି । ତା'ର କାରଣ ତାଙ୍କର କେହି ଜଣେ ପୂର୍ବପୁରୁଷ ଗୌମତି ବହୁତ ପ୍ରତାପୀ ଥିଲେ । ତାଂକ ବଂଶମର୍ଯ୍ୟାଦା ଅନ୍ୟ ବଂଶମର୍ଯ୍ୟାଦାଠୁ ଉପରେ ଥିଲା - ଏମିତି ହିଁ ଧାରଣା ଥିଲା । ତାଂଙ୍କ ଘରର ସମସ୍ତେ ବାହାପିଆ ଠାଣିରେ ଚଳୁଥିଲେ । ତାଙ୍କର କାକାମାନେ ଜାତି ପ୍ରସଂଗରେ, ଶ୍ମଶାନରେ, ବରଯାତ୍ରା ଗଲା

ବେଳେ ସବୁଠୁ ଆଗରେ ରହୁଥିଲେ । ତାଙ୍କରି ପିଉସୀମାନେ ବାହୁନି ବାହୁନି କନ୍ଦାକଟା କଲାବେଳେ ବା ଫଟାଣ ଗାଇଲାବେଳେ ସମସ୍ତଙ୍କ ଠାରୁ ସ୍ୱର ଅଲଗା ରାଗରେ ତୋଳୁଥିଲେ । ତାଙ୍କରି ପିଲାମାନଙ୍କୁ ଅଲଗାମାନଙ୍କ ସାଙ୍ଗରେ ଖେଳିବାକୁ କଡ଼ାକଡ଼ି ଭାବରେ ମନାଥିଲା ।

ସ୍କୁଲରେ ମାଷ୍ଟର ଙ୍କୁ ସ୍ପଷ୍ଟ ଆଦେଶ ଥିଲା, ଖବରଦାର୍ ଆମ ପିଲା ଯଦି ଅନ୍ୟ କାହା ସାଙ୍ଗରେ ଖେଳିବା ବା ବସିବା ଦେଖା ଯାଏ ତ । କାହିଁକି ନା ଗୌମତିଙ୍କ ବଂଶ କଥା ଆସିଲା ମାତ୍ରେ ପ୍ରତ୍ୟେକ ସଦସ୍ୟଙ୍କ ମଥା ଉପରକୁ ଉଠି ଯାଉଥିଲା ।

ସୁମତି ଛୋଟ ଥିଲାବେଳେ ତାକୁ ବହୁତ ରାଗ ଲାଗୁଥିଲା କାହିଁକି ନା ଗୌମତି କୂଳରେ ଜନ୍ମ ନେଇଥିଲେ ବି ତାଠି ସେ ଗର୍ବଭାବ କିଛି କମ୍ ଥିଲା । ବୁଝି ହେଉ ନଥିଲା ଯେ ଏମିତି କଣ କଥା ଥିଲା ଯେ ସାଇ ପିଲାଙ୍କ ସାଙ୍ଗରେ ଖେଳିବା ମନା ଥିଲା । ସ୍କୁଲରେ ବଂଧୁତା ମନା ଥିଲା । ସାଂଗ ହୋଇ ଚଣା ଖାଇବା ଆଉ ବର୍ଷା ପାଣିରେ ଦଉଡ଼ିବା ବି ମନା ଥିଲା । ଧୀରମତି ପିଉସୀ ତଥା ହରମତି ପିଉସୀ ତାକୁ କଡ଼ାଭାବରେ ଗାଳିଦେଉଥିଲେ ଏବଂ ''ଗୌମତି କୁଳ କଳଙ୍କ'' ହେବାର ଭୟାନକ ଭବିଷ୍ୟବାଣୀ ଶୁଣାଉଥିଲେ ।

ସେ ଦୁହିଁଙ୍କ ଭିତରୁ ହର୍‌ମତି ପିଉସୀଙ୍କ କୁଳାଭିମାନ ଅଧିକ ଥିଲା । ତାଙ୍କ ସ୍ୱାମୀ ଜିବୀତ ଥିଲେ କିଂତୁ ସାତବର୍ଷ ଧରି ସ୍ୱାମୀ ଓ ଶାଶୁଙ୍କ ସହ କୁଳର ମର୍ଯ୍ୟାଦାକୁ ନେଇ ବାଦ ବିବାଦ ପରେ ମଧ୍ୟ..... ସେତେବେଳେ କଳ୍ଲକ୍ଷ୍ମୀ ହର୍‌ମତି ପିଉସୀ ସେଇ ନୀଚ ଲୋକଙ୍କ ସାଙ୍ଗରେ ରହିବା ଅପେକ୍ଷା ସ୍ୱାମୀ ଥିଲେ ବି ବୈଧବ୍ୟ ସ୍ୱୀକାର କରି ନେଇ ଶେଷ ଜୀବନ ବାପଘରେ କଟେଇବାକୁ ଜିଦ୍ କରିଥିଲେ ।

ଅନେକଥର ସୁମତି ପିଉସୀଙ୍କୁ ପଚାରୁଥିଲା : କାହିଁକି ଏମିତି କରିବି ନାହିଁ ? ପିଉସୀ ବିଗିଡ଼ି ଯାଉଥିଲେ । ବାଳକର କୁବୁଦ୍ଧି ନାଶର ପ୍ରାର୍ଥନା ପାଇଁ ତାଙ୍କ ଆଖି ଆକାଶ ଆଡ଼କୁ ଉଠି ଯାଉଥିଲା । ଅନେକଥର ସେ ଟିକିଏ ଜୋର୍‌ରେ ପୂଜା କୋଠରୀକୁ ଇଂଗିତ କରୁଥିଲେ । ସେ ସବୁ କରିବାର ଗୋଟିଏ କାରଣ ଥିଲା ବହୁତ ବଡ଼ କାରଣ ।

ପୂଜା କୋଠରୀର କିଛି ଅଦ୍‌ଭୁତ ରହସ୍ୟ ଥିଲା । ଗୌମତି ନାଁ ଧରୁ ଧରୁ ସମସ୍ତଙ୍କ ଦୃଷ୍ଟି ସେଇ ଆଡ଼କୁ ଚାଲିଯାଉଥିଲା ଯେମିତି ଗୌମତି ଜେଜେ ସେଇଠି ସ୍ୱଦେହରେ ବିରାଜମାନ ଅଛନ୍ତି । ଏକ ସଂତ୍ରସ୍ତଭାବ ଖେଳିଯାଏ ବର୍ଷରେ ଥରେ । ବୈଶାଖ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ଦିନ ପରିବାରର ସବୁ ବୟସ୍କ ସଦସ୍ୟ ଏକତ୍ରିତ ହେଉଥିଲେ । ପିଲାଛୁଆ ମାନଙ୍କୁ ଅନ୍ୟ ଏକ କୋଠରୀରେ ବଂଦ କରି ଦିଆଯାଉଥିଲା । ଘିଅ ଦୀପଜାଳି ସମସ୍ତେ ପୂଜା କୋଠରୀକୁ ଯାଇ କୌଣସି ଏକ ଜିନିଷକୁ ନୈବେଦ୍ୟ ଅର୍ପଣ କରୁଥିଲେ ।

ସୁମତିର ବହୁତ ଇଚ୍ଛା ହେଉଥିଲା ଜାଣିବା ପାଇଁ ଯେ କଣ ଅଛି ଭିତରେ, କିଂତୁ କାକାଙ୍କ କଡ଼ା ପ୍ରତିବଂଧ ଥିଲା । ବଡ଼ ହେଲା ପରେ ତାକୁ କୁହାଗଲା ଯେ ପୂଜାକୋଠରୀରେ ଗୌମତି ଜେଜେଙ୍କ ବସ୍ତ୍ର, ମୁକୁଟ ତଥା ଅଳଙ୍କାର ରହିଛି । ଗୋଟିଏ କିଂବଦନ୍ତୀ ପରିବାରରେ ପ୍ରଚଳିତ ଥିଲା ଯେ ଯେତେ ଦିନ ଯାଏଁ ଏ ବସ୍ତ୍ର ଅଳଙ୍କାର ସୁରକ୍ଷିତ ରହିବ ସେତେ ଦିନ ଯାଏଁ ବଂଶ ମର୍ଯ୍ୟାଦାରେ କୌଣସି କଳଙ୍କ ଲାଗିବ ନାହିଁ । ଜାତିର ଲୋକଙ୍କୁ ବି ଏଇ ଦନ୍ତ କଥା ସ୍ୱୀକାର ଥିଲା । ଗୌମତି କୁଳତିଳକ ସମ୍ମାନର ଅଧିକାରୀ ହେଉଥିଲେ, ଯଜମାନ ମାନଙ୍କୁ ଭଲ ଦକ୍ଷିଣା ବି ଦେଉଥିଲେ । ଥରେ ପିଉସୀ

ତାକୁ ବୁଝେଇଥିଲେ ଯେ ବାଇଶବର୍ଷ ହେଲା ପରେ ଯାଇ ପୁଅ ଝିଅଙ୍କୁ ଗୋମତି ଜେଜେଙ୍କ ବସ୍ତ୍ରାଳଂକାର ଦର୍ଶନ କରିବାର ସୌଭାଗ୍ୟ ପ୍ରାପ୍ତି ହେବ।

ଯେତେ ଯେତେ ସୁମତି ବଡ଼ ହେବାକୁ ଲାଗିଲା କୁଳଦୀପକ ହେବାର ସବୁ ସଂଭାବନା ବଢ଼ି ଚାଲିଲା । ମୁଣ୍ଡ ଉପରକୁ ଉଠିଗଲା - ସ୍ୱଭାବ ବି କିଛି ସଂଶୋଧିତ ହୋଇଗଲା । ସେ ବି ଗୋମତିଙ୍କ ବଂଶ ପରଂପରାର କଥା କହିବାକୁ ଲାଗିଲା । ବାଇଶବର୍ଷ ଯାଏଁ ପୂଜା କୋଠରୀକୁ ଯିବା ପାଇଁ ନିଷେଧ ଥିଲା କିଂତୁ କଳ୍ପନା ଜଳ୍ପନାରେ ସେ ହଜି ଯାଉଥିଲା । ରେଶମୀ ପୋଷାକ ଚିକ୍‌ମିକ୍ ରନ୍ ପଥର, ଶିରସ୍ତ୍ରାଣ, ବୈଜୟନ୍ତୀମାଳା କଣ କଣ ଥିବ ତା'ଭିତରେ ? ସେ ଏମିତି ବି ଭାବୁଥିଲା ଯେ ଗୌମତି ଜେଜେ ବିକ୍ରମାଦିତ୍ୟଙ୍କ ଠାରୁ ବି ଦୁଇ ଚାରି ପାହୁଣ୍ଡ ଆଗରେ ଥିବେ । ସେ ଇଂରାଜୀ ପଢ଼ିବା ଆରଂଭ କଲା । ସେ ଦିନଠୁ ମାଟ୍ରିକରେ ଚଳୁଥିବା ଗୋଟିଏ ଗୋଟିଏ ଟଙ୍କାରେ ମିଳୁଥିବା ଇତିହାସ ପୃଷ୍ଠାରେ ସେ ପ୍ରତ୍ୟେକ ଧାଡ଼ିରେ ''ଗୌମତି'' ଶବ୍ଦ ଖୋଜିବାକୁ ଚେଷ୍ଟା କରିଥିଲା । ମାଟ୍ରିକ ଶେଷ ହେଲା ପରେ ସେ ପ୍ରୟାସ ଶେଷ ହେଲା । ସେତେବେଳେ ତାକୁ ଜଣା ପଡ଼ିଲା ଯେ ଗୋଟିଏ ଟଙ୍କାରେ ମିଳୁଥିବା ଇତିହାସ ବି ଅପୂର୍ଣ୍ଣ । ପୁଣି ସେ ଶ୍ରଦ୍ଧା ଫେରି ପାଇଲା । ବିଦ୍ୟାଳୟର ପୁସ୍ତକାଳୟରୁ ସେ ଇତିହାସ ନେଇ ଆସିଲା ପୁଣି ଥରେ ଅନୁସଂଧାନ ଆରଂଭ କଲା ।

ଜଣେ ଯଜମାନଙ୍କ ଭୁଲ୍ ଉପଦେଶ କ୍ରମେ ସୁମତିକୁ କଲେଜରେ ପଢ଼େଇବାର ନିର୍ଣ୍ଣୟ ନିଆଗଲା । ହଷ୍ଟେଲ୍‌ରେ ଭ୍ରଷ୍ଟାଚାର ଯୋଗୁଁ ସୁମତିକୁ ଯଜମାନଙ୍କ ଘରେ ରଖାଗଲା । ଜାତି ତଥା କୁଳଶୁଦ୍ଧତା ସାଂଗେ ସାଂଗେ ପେଟର ବି ପ୍ରାଶ୍ନ ଥିଲା ତେଣୁ ସେ ବିଧର୍ମୀ ପାଶ୍ଚାତ୍ୟ ପାଠ ପଢ଼ିବାକୁ ଆରମ୍ଭ କଲା । ଇଂରାଜୀ ଶିକ୍ଷାର ଅଶୁଦ୍ଧତାରେ ସୁମତିର ପବିତ୍ର ଗୌମତି ସ୍ୱଭାବ କଳୁଷିତ ହେଲା । ଧିରେ ଧିରେ ସ୍ୱାତନ୍ତ୍ର୍ୟ ଆଉ ବ୍ୟକ୍ତିତ୍ୱ ଭଳି ପାଶ୍ଚାତ୍ୟଶବ୍ଦ ଗୁଡ଼ିକର ଧ୍ୱନି ପ୍ରତିଧ୍ୱନି ସେ ଶୁଣିବାରେ ଲାଗିଲା ଆଉ ଗଂଗା ଭଳି ସେ ତଳକୁ ହିଁ ପଡ଼ିବାକୁ ଲାଗିଲା । ଗୋଟିଏ ଖୁବ୍ ବ୍ୟକ୍ତିଗତ କଥା - ଥରେ ତିନିଦିନ ଲଗାତାର ସେ ସଂଧ୍ୟା ବି କଲା ନାହିଁ ଆଉ ଥରେ କଲେଜରେ ଡ଼ିବେଟିଂ ସୋସାଇଟୀରେ ''ସବୁ ମଣିଷ ସମାନ'' ଭଳି ଆଲୋଚନାରେ ଭାଗ ନେବାର ନିର୍ଲଜ ପଦକ୍ଷେପ ବି ନେଲା । ଅଧମତାର ସୀମା ବି ଛୁଇଁଗଲା ଯେତେବେଳେ ସେ କହିଲା ଯେ ବାପା - ଜେଜେଙ୍କ ମର୍ଯ୍ୟାଦାରେ ବଂଚିବା, ଆପଣାର କ୍ଷୁଦ୍ରତାକୁ ହିଁ ସ୍ୱୀକାର କରିବା । ଅଧଃପତନର ସୀମା ଆସିଗଲା । ସ୍ୱର୍ଗରେ କିଂବା ଯେଉଁଠି ବି ଥାଆନ୍ତୁ ଗୌମତିଙ୍କ ଆତ୍ମା ବିଳପି ଉଠିଲା । ବ୍ରହ୍ମଲୋକରେ ଅତ୍ରି ଋଷିଙ୍କ ହାତରୁ ଗୋମୁଖୀ ଖସି ପଡ଼ିଲେ । ତାଙ୍କର ଅର୍ଦ୍ଧାଂଗିନୀ ଅନୁସୂୟାଙ୍କ ଆଖିରୁ ଆଧାତ୍ମିକ ଲୁହ ଝରି ପଡ଼ିଲା ।

ଯେତେ ଯେତେ ସେ ପିଲା ବିଗିଡ଼ିବାକୁ ଲାଗିଲା ତା'ମନରେ ପୂଜାକୋଠରୀର ରହସ୍ୟ ଉନ୍‌ମୋଚନ କରିବା ଇଛା ବଢ଼ିଚାଲିଲା । ଗୌମତି ଜେଜେ କଣ କରୁଥିଲେ ? ତାହା ଜାଣିବାର ଜିଜ୍ଞାସା ବି ବଢ଼ି ଚାଲିଲା । କିଛି ଐତିହାସିକ ପ୍ରମାଣ ନ ମିଳିବାରୁ ତାକୁ ଲାଗିଲା ସେ ଜଣେ ଠାକୁର ବା ଜମିଦାର ହୋଇଥିବେ । କୋଡ଼ିଏ ଏବଂ ବାଇଶ ବର୍ଷର ସମୟ ଅତି ଭୟଂକର ଥିଲା ।

ଶେଷରେ ବାଇଶ ବର୍ଷ ଶେଷ ହୋଇ ଆସିଲା । କାକାଙ୍କ ଦେହାନ୍ତ ହୋଇ ସାରିଥିଲା । ତେଣୁ ପିଉସୀମାନେ ସେଇ ଗୌରବର ରହସ୍ୟ ଖୋଲିବାକୁ ଅନୁମତି ଦେଲେ । ସୁମତି ଶଂକରର ହୃଦୟ ଉଛୁଳି ପଡ଼ିଲା । ଗୋଟିଏ ଶୁଭ ଦିନରେ ସେ ଗାଁକୁ ଆସିଲା ।

ଘରର ବୋହୁମାନଙ୍କୁ ବାପଘରକୁ ପଠେଇ ଦିଆଗଲା । ପିଲାଛୁଆଙ୍କୁ ପଡ଼ୋଶୀଘରେ ବସେଇ ଦିଆଗଲା । କବାଟ ବନ୍ଦ କରି ଦିଆଗଲା । ପିଉସୀମାନେ ତଥା ପୁତୁରାମାନେ ସାବଧାନତାର ସହ ଗୌମତି ଜେଜେଙ୍କ ବସ୍ତ୍ର ଦର୍ଶନ ପାଇଁ ପୂଜା କୋଠରୀ ପାଖକୁ ଆସିଲେ । ଦୀର୍ଘଶ୍ୱାସ ନେଲେ । ସମ୍ମାନ, କୃତଜ୍ଞତା, ପିତୃଭକ୍ତି ଯେମିତି ଉଛୁଳି ପଡ଼ିଲା । ଅତ୍ରି ଓ ଅନୁସୂୟାଙ୍କୁ ମାନସିକ ଆରାଧନା କରାଗଲା । ଗୌମତି ଜେଜେ ବୋଧହୁଏ ଭିତରେ ଶୋଇଛନ୍ତି ସେଇୟା ଭାବି ନୀରବତାର ସହ ସମସ୍ତେ ପ୍ରବେଶ କଲେ । ଜଣେ ପିଉସୀଙ୍କ ହାତରେ ଥିଲା ଘିଅଦୀପ ଅନ୍ୟ ଜଣକ ହାତରେ ଥିଲା ନୈବେଦ୍ୟ । ପୂଜା କୋଠରୀରେ ଅଳଂଧୁ ଆଦି ଆସ୍ଥାନ ଜମେଇ ସାରିଥିଲେ । ଗୋଟିଏ ଅଂଧାରୁଆ କୋଣରେ ଗୋଟିଏ ସିନ୍ଦୁକ ଥିଲା ଯାହା କି ପିଉସୀ କାଢ଼ିଲେ ।

ସୁମତିର କାନରେ ଦୁନ୍ଦୁଭି ବାଜି ଉଠିଲା । ବାଇଶ ବର୍ଷର ସ୍ୱପ୍ନର କେନ୍ଦ୍ରସ୍ଥଳ ସେ ଆଜି ଦେଖିବାକୁ ଯାଉଥିଲା । ହାତ ଥରି ଯାଉଥିଲା, ତଣ୍ଟି ଶୁଖି ଯାଉଥିଲା । ଜଣେ ପିଉସୀ ଧୀରେ ବାକ୍ସଟି କାଢ଼ିଲେ । ସେଥିରେ ବଂଧାଥିବା କଳଂକି ଲଗା ଚାବି ଖୋଲି ଲଗାଇଲେ । ବାକ୍ସ ଖୋଲାଗଲା । ଦୁଇ ପିଉସୀ ଯେମିତି 'କାଉଣ୍ଟ ଅଫ ମଣ୍ଟେକ୍ରିଷ୍ଟୋ'ଙ୍କ ଆଲମାରୀ ଦେଖାଉଛନ୍ତି ସେଇ ଭଂଗୀରେ ସୁମତି କୁ ଦେଖେଇଲେ ।

ଅଂଧାରରେ ସୁମତି ନଇଁପଡ଼ି ଦେଖିଲା ବାସ୍ତବରେ ସବୁଜ ରଂଗର ମଖମଲି ପୋଷାକ, ରୂପାର କିଛି ମୁଦ୍ରା ଦେଖାଗଲା । ଜରି ପୋଷାକ, ଶିରସ୍ତ୍ରାଣ ର କଳ୍ପନା ଭୁଲ୍ ଥିଲା । ରୂପାର ଫଳକରେ କିଛି ଖୋଦେଇ ହୋଇଥିବା ଦେଖାଗଲା । ନଇଁପଡ଼ି ସୁମତି ପଢ଼ିବାକୁ ଚେଷ୍ଟାକଲା । ଇଂରାଜୀ ଅକ୍ଷରରେ ''ସୁରଟ'' ଲେଖାଥିବା ଦେଖାଗଲା । ଧୀରମତି ପିଉସୀ । ୟା କୁ ବାହାରକୁ ଆଣ । ଏଥିରେ କିଛି ଲେଖାଅଛି : ନା-ନା ବାହାରକୁ କେମିତି ଅଣାହେବ ?

: ଦେଖ ପିଉସୀ ଗୌମତି ଜେଜେ କଣ ଥିଲେ ଜଣା ପଡ଼ିଯିବ । ଦେଖିଲ ତ ଇଂରାଜୀରେ ପଢ଼ିବାର ମଜା ? ହଁ ନାଇଁ ଭିତରେ ହଁ କରିଦେଲେ ପିଉସୀମାନେ । ସୁମତିର ମନରେ ନାନା ପ୍ରକାର ବିଚାର ଆସିଲା । ହୋଇପାରେ ଗୌମତି ଜେଜେ ସୁରଟ୍‌ର ଦେୱାନ ଥିଲେ । ସୁରଟ୍ ତାଙ୍କୁ ବକ୍‌ସିସ୍‌ରେ ମିଳିଥାଇପାରେ । ସରକାରଙ୍କ ବିରୁଦ୍ଧରେ କେଶ୍ ଲଢ଼ି ଫେରେଇ ବି ଅଣାଯାଇପାରେ । ବିଲାତ ପର୍ଯ୍ୟନ୍ତ ସେ ଲଢ଼ିବ କିଂତୁ ତାର ହକ୍ ମିଳିବା ଦର୍କାର । ଏଇୟା ଭାବି ସେ ବାକ୍ସଟିକୁ ବାହାର ଆଲୁଅକୁ ଆଣିଲା । ସୁରଟ୍ ସହର ହାତରୁ ଖସି ନ ଯାଉ - ବହୁତ ଯନ୍‌ରେ ସେ କୋର୍ଟଟିକୁ କାଢ଼ିଲା । କୋର୍ଟ ଉପରେ ରୂପାର ଅକ୍ଷର ଥିଲା । ଅକ୍ଷରକୁ ସେ ଆଲୁଅରେ ପଢ଼ିଲା - ସୁମତି ଆଖି ଆଗରେ ଅଂଧାର ଛାଇଗଲା : ''ସୁରଟ୍ ର କୋଠି । ମିଃ ହାବର୍ଡ଼ ଙ୍କ ମୂଲିଆ'' ସୁମତି ଅଚେତ ହେବା ପରି ହେଲା । ତା' ହାତରୁ ପୋଷାକ ଖସି ପଡ଼ିଲା । ଜଣା ପଡ଼ିଗଲା ଗୌମତି ଜେଜେ କଣ କରୁଥିଲେ । ଚେତନା ଫେରି ପାଇବା ପରେ ସେ ସଶବ୍ଦରେ ହସିଲା । ପିଉସୀମାନେ ରାଗିଲେ । ପୁତୁରା ସ୍ପଷ୍ଟ କରିଦେଲା । ପିଉସୀମାନେ ଓ ପୁତୁରା ଖୁବ୍ କଷ୍ଟରେ ବଂଶ ପରଂପରାକୁ ସଂଖୋଳିଲେ ।

ରାତିରେ ଦୁଇ ପିଉସୀ ତଥା ପୁତୁରା ପଛ ଦ୍ୱାର ଦେଇ ବାହାରକୁ ଆସିଲେ । ଗୋଟିଏ ଗଂଠିଲି ସହ ବଡ଼ ପଥରଟିଏ ବାଂଧିଦେଲେ ଆଉ ପଡ଼ୋଶୀଙ୍କ କୂଅ ପାଖକୁ ଯାଇ ସେମାନେ ଗୌମତି ଜେଜେଙ୍କ ଗୌରବକୁ ବିସର୍ଜନ କରିଦେଲେ ।

*ଭାଷାଂତର : ଗାୟତ୍ରୀ ସରାଫ*



ଜାମ୍ମୁ-କାଶ୍ମୀରର ଶ୍ରୀନଗରଠାରେ ଶ୍ରୀ ଦିନାନାଥ କୋଲ 'ନାଦିମ୍'ଙ୍କ ଜନ୍ମ ମାର୍ଚ୍ଚ ୧୬ ତାରିଖ ୧୯୧୬ ମସିହାରେ । ପିଲାଟି ଦିନରୁ ଇଂରାଜୀରେ କବିତା ତଥା ଉର୍ଦ୍ଦୁ ଶାୟରୀ ସେ ଲେଖାଲେଖି କରୁଥିଲେ । ୧୯୪୭-୪୮ ସମୟରେ ଭାରତର ସ୍ୱାଧୀନତା ଓ ଜାମ୍ମୁ-କାଶ୍ମୀରର ମିଶ୍ରଣ ପରେ ଯେଉଁ ଜଟିଳ ତଥା ଭୟଙ୍କର ପରିସ୍ଥିତି ସୃଷ୍ଟି ହୋଇଥିଲା କାଶ୍ମୀରରେ, ସେଥିରେ ସେ ଜଣେ ଚିନ୍ତାଶୀଳ କବି ଲେଖକ ଭାବରେ ସ୍ୱ-କର୍ତ୍ତବ୍ୟ ସଂପାଦନ କରିଥିଲେ । ଶ୍ରୀ ଦିନାନାଥ କୋଲ 'ନାଦିମ୍' ମୂଳତଃ ଜଣେ କବି । ମାତ୍ର ଯୁଗପ୍ରବର୍ତ୍ତକ ଭାବରେ ସାହିତ୍ୟର ବିଭିନ୍ନ ବିଭାବ ଉପରେ ଜଣେ ପଥପ୍ରଦର୍ଶକର ଦାୟିତ୍ୱ ସେ ନିର୍ବାହ କରିଛନ୍ତି । 'କଓ୍ୱାବି କାର୍ଡ'·(ପ୍ରତ୍ୟୁତ୍ତର ପତ୍ର) ତାଙ୍କର ସେଇ ଦାୟିତ୍ୱର ଉଦାହରଣ ।

# ପ୍ରତ୍ୟୁତ୍ତର ପତ୍ର

କୁନଦାଦି, କୁନଦାଦି କ'ଣ ଏବେ ତୁମେ ଭିତରେ ଅଛ.....?

ନିଜ ଆସିବାର ସୂଚନା ଦେଇ ଜମାଲମୀର ଚଉତରା ଉପରେ ନିଶ୍ଚିନ୍ତ ହୋଇ ବସିଗଲା । ମଇଳା ଲମ୍ବା କୁର୍ତ୍ତାର କାହିଁ ଭିତର ପକେଟରୁ ନାସଦାନି ବାହାର କଲା ଓ ଗୋଟିଏ ବଡ଼ ଚିମୁଟା ପାଟି ଭିତରକୁ ନେଲା । ତାର ହାତରେ ଥିବା ବାଡ଼ିରେ ସେ ଧୂଳି ଉପରେ ଚିତ୍ର ଆଙ୍କିବାକୁ ଲାଗିଲା ।

ଦଶ ପନ୍ଦର ମିନିଟ, ଅପେକ୍ଷାରେ ବିତିଗଲା । ତାପରେ ଗୁହାଳ କବାଟର ବାମପାଖରେ କିଛି ଶବ୍ଦହେଲା । ଜମାଲମୀର ସାବଧାନ ହୋଇଗଲା । ପଛକୁ ବୁଲି ଦେଖିଲା କୁନଦାଦିଙ୍କୁ, ଯେମିତି ପୂର୍ଣ୍ଣମୀର ଚନ୍ଦ୍ର ଠିଆ ହୋଇଛି । ତାଙ୍କର ଦାନ୍ତ ଗୁଡ଼ିକ ବାହାରକୁ ବାହାରି ଆସିଲା ଓ ହୃଦୟର ଗଭୀରତାରୁ ଫୁଟିପଡ଼ିଲା ଏକ ଖୋଲାହସ ।

- ଧେତ ଟେରିକି ! ମୁଁ ଭାବୁଥିଲି କିଏ ସକାଳୁ ସକାଳୁ ଆସିଛି ? 'ନାସ' ଖାଉ, ଭାରି କଣ୍ଠ ବଦଳେଇ କହୁଛି । ହସି ହସି କହିଲେ କୁନଦାଦି ।

କୁନଦାଦି ଥିଲେ ଗାଁର ଆଈ ଓ ଗାଁ ଲୋକଙ୍କ ମାଁ । ଲମ୍ବାଚୌଡ଼ା ସ୍ତ୍ରୀ-ଲୋକ । ବରଫଭଳି ଧଳାବାଳ । ବଡ଼ ବଡ଼ ଗହିରିଆ ଆଖି, ଲମ୍ବା ଧାରୁଆ ନାକ ଏବଂ ଜଂଘ ଛୁଉଁଥିବା ଲଂବା ବାହୁ । ଧଳା ଲଂବା କୁର୍ତ୍ତା ପିଂଧି ସେ ଲାଗୁଥିଲେ ଯେମିତି ଏକ ବନଦେବୀ ।

- ଦାଦି, ଖରା ଏତେ ବଢ଼ିଗଲାଣି ଆଉ ତୁମେ ଏତେବେଳ ଯାଏଁ ଶୋଇଥିଲ । ପାଟିରୁ ଛେପ ପକାଉ ପକାଉ କହିଲା ଜମାଲମୀର ।

- ତୁ' ତ ଗୋଟାଏ ବୁଦ୍ଧୁ । ଆଉ କ'ଣ କହିବି । କହିଲେ କୁନଦାଦି - ତୁ ଚାଲାକ ଆଉ କେବେ ହେବୁ ? ତୁ ଦେଖିପାରିଲୁ ନାହି, ଏବେ ହିଁ ମୁଁ ଗୁହାଳରୁ ବାହାରି ଆସୁଛି । ଶୋଇଥିଲି କେଉଁଠି ?

ଜମାଲମୀର କିଂଚିତ ଲଜ୍ଜିତ ତ ହେଲା କିନ୍ତୁ ଅଳ୍ପ ବିଗିଡ଼ିଯାଇ କହିଲା - ନାଇଁ ଦାଦି ଅସଲକଥା ହେଉଛି ଯେ ତୁମେ ଗୁଲାମ ମହମ୍ମଦ ପାଇଁ...

କୁନଦାଦିଙ୍କ କପାଳ କୁଂଚିତ ହୋଇଗଲା । ତା ଦେଖି ଜମାଲମୀର ନିଜେହିଁ କଥାର ପ୍ରସଙ୍ଗ ବଦଳେଇ ଦେଲା । କିଛି ସମୟ ପାଇଁ ଦୁହେଁ ଚୁପ ରହିଗଲେ । ଶେଷରେ କୁନଦାଦି ହିଁ ନୀରବତା ଭଙ୍ଗକରି କହିଲେ ହଁ, ଠିକ ତ ଅଛି । ମୋର କ'ଣ ଆମ ଗାଈ ମଧ ତାରି ବିରହରେ ଅନ୍ନ ପାଣି ଛାଡ଼ି ଦେଲାଣି......। ତାର ହିଁ ସେବାରେ ଏତେବେଳେ ଯାଏଁ ଗୁହାଳରେ ଥିଲି ।

ଏ ଭିତରେ ଗାଁର ଆଉ ବହୁତ ଲୋକ ଚଉତରାକୁ ଆସି, ବସିଗଲେ । ଆହୁରି ଲଂବାହେବାକୁ ଲାଗିଲା କଥାବାର୍ତ୍ତା ।

କୁନଦାଦି କିଏ ଥିଲେ, କେଉଁଠାରେ ଥିଲେ ଏବଂ କେତେ ବୟସର ଥିଲେ ଏହି ପ୍ରଶ୍ନର ଉତ୍ତର ଏ ଗାଁର କାହାପାଖରେ ନଥିଲା । ଏହି ଗାଁର ବୃଦ୍ଧ ରୁ ବୃଦ୍ଧ ଲୋକ ମାନେ ମଧ୍ୟ କୁନ ଦାଦିଙ୍କୁ ପୁରାପୁରି ସେପରି ଦେଖୁଥିଲେ । ଯେମିତି ସେ ଆଜି ଅଛନ୍ତି । କିନ୍ତୁ ଏତିକି ସଭିଏଁ ଜାଣିଥିଲେ କି କୁନଦାଦି ସବୁକିଛି ଅଟନ୍ତି । ଗାଁର ହାକିମ, ଗାଁର ସରପଞ୍ଚ, ଗାଁର ରକ୍ଷାକର୍ତ୍ତା, ନୟରଦାର, ଚୌକିଦାର, ପଟଓ୍ୱାରି ସବୁକିଛି ! ସେ ବଡ଼ ଲୋକମାନଙ୍କ ପରାମର୍ଶଦାତା, ଛୋଟମାନଙ୍କ ଲେଙ୍ଗୁଟି ମରା ଖେଳସାଥୀ ଏବଂ ଗାଁ'ର ଝିଅ ଭୁଆସୁଣୀଙ୍କ ପକ୍କା ରକ୍ଷାକର୍ତ୍ତା ।

ଗାଁ'ର କୋଉଁଠି ପଞ୍ଚାୟତ ହେଲେ କୁନଦାଦିଙ୍କୁ ଫଇସଲା ଦେବାକୁ ପଡୁଥିଲା କିଏ ଗଲେ କୁନଦାଦିଙ୍କ ନିଷ୍ପତ୍ତି ହିଁ ଅନ୍ତିମ ଥିଲା । ବାହାଘର ଆଦି କ୍ଷେତ୍ରରେ ଦାଦି ମଧ୍ୟସ୍ଥି ହେଉଥିଲେ । କାହାର କୌଣସି ଦୁଃଖ କଷ୍ଟ ହେଲେ ଅନୁଭବ ହୁଏ ଦାଦି ନିଜେ ବେମାର ଓ ଦୁଃଖରେ ଅଛନ୍ତି ।

ସାରା ଇଲାକାରେ ଏଇକଥା ପ୍ରସିଦ୍ଧି ଥିଲା ଯେ କୁନଦାଦିଙ୍କ କଥା ପଥରଗାର, ଯାହାକୁ ବଡ଼ଲାଟ ମଧ୍ୟ ବଦଳେଇ ପାରିବେ ନାହିଁ । ଏଥିପାଇଁ କୁନ ଦାଦିଙ୍କ ଝୋପଡ଼ି ଥିଲା ଗାଁର ସଭିଙ୍କ ବୁଢ଼ୀମା ଘର । କାହାର ପାଦରେ କଣ୍ଟାଟିଏ ଲାଗିଲେ ମଧ୍ୟ ସେ ଦଉଡ଼ିକି ପହଂଚି ଯାଉଥିଲା ଦାଦିଙ୍କ ପାଖରେ ।

ବୋନପୁର ଗାଁ କୁ ସେହି ଅଂଚଳର ଲୋକମାନେ କୁଆ ମାନଙ୍କ ମାଁ ଘର ବୋଲି କହୁଥିଲେ । ଏଥିପାଇଁ ଯେ ଯା-ଆସ କଲାବେଳେ ସମସ୍ତ କୁଆ ସେଠାକାର ଚିନାର ଗଛ ମାନଙ୍କରେ ରାତି ବିତାଉଥିଲେ । ସେଥି ମଧ୍ୟରୁ କିଏ ଜଣେ ନିଜର ବସା ମଧ୍ୟ ତିଆରି ଥିଲା ।

ଆଜି ବି ସଂଧ୍ୟା ସମୟରେ ସେଠାରେ କୁଆମାନେ ଏତେ ହୋହଲ୍ଲା କରୁଥିଲେ ଯେ ପାଖରେ ରହୁଥିବା ନାଳର ଆଓ୍ୱାଜ୍ ମଧ୍ୟ ସେହି ଶବ୍ଦରେ ମଳିନ ପଡ଼ିଯାଉଥିଲା । ଅଚାନକ ବଂଧୁକ ଫୁଟିବାର ଶବ୍ଦ ହେଲା । କୁଆ ମାନେ କା' କା' ଶବ୍ଦ କରି ଗଛରୁ ଉଡ଼ି ଚାଲିଯିବାକୁ ଲାଗିଲେ ।

ବଂଧୁକ ଆଓ୍ୱାଜ ଏଠାରେ କେମିତି ? ସେ ଆଡ଼କୁ ଦେଖ । ଏକ ଫୌଜି ଜବାନ ଆସୁଛି । ଏହା ତାର ସଇତାନି ।

ଭରପୁର ପରିପୂର୍ଣ୍ଣ ଅଙ୍ଗ, ଚଉଡ଼ା ମଜଭୁତ ଛାତି, ମାଂସଳ କାଂଧ, ଚମକୁଥିବା ଚେହେରା ଓ ସୁନ୍ଦର ଚାଲିଚଳନ । ଯେମିତି କୌଣସି ଫିରିଙ୍ଗି କ୍ୟାପ୍‌ଟେନ ନିର୍ଶ୍ଚିନ୍ତ ହୋଇ ଖୁସିରେ ଚାଲି ଆସୁଛି । ଯେମିତି ସେ ଗାଁ କୁ ପହଁଚିଲା ଗାଁର ଛୁଆମାନେ ତାହାକୁ ଘେରିଗଲେ । କିଛି ଛୁଆତ ତାହାର ଗୋଡ଼ରେ ଘସାଡ଼ି ହେଲେ, କିଏ ତାହାର ପକେଟରେ ହାତ ପୂରାଇ ଦେଖିଲା ଆଉ କିଏ ଛୁଇଁକି ଦେଖିଲା ତାର ବଂଧୁକ । ତାପରେ ପିଲାମାନେ ପାଟି କରିବାକୁ ଲାଗିଲେ, ଗୁଲାମ ମହମ୍ମଦ ଆସିଗଲା, କୁନଦାଦି ଗୁଲ ସାହେବ ଆସିଗଲା । ଆମର କ୍ୟାପଟେନ୍ ଆସିଗଲା । ଏହି ସ୍ଲୋଗାନ ଦେଇଦେଇ ଛୁଆମାନଙ୍କ ପ୍ରସେସନ କୁନ ଦାଦିଙ୍କ ଚଉତରାକୁ ଆସିଗଲା ।

ଧଡ଼ାସ କରି କବାଟ ଖୋଲି, କୁନଦାଦି ବାହାରି ଆସିଲେ ନିଜଘରୁ । ଆଖିରେ ହସ ଓ ଚେହେରା ରେ କୃତ୍ରିମ ଗାମ୍ଭୀର୍ଯ୍ୟ ରଖି ସେ କହିଲେ - ହୁଁ ଗୁଲ ସାହେବ ! କପ୍ତାନ : ଯଦି ଏମିତି ହିଁ ବୁଦ୍ଧୁ, କ୍ୟାପ୍‌ଟେନ ହେବେ ତ......। ଏବଂ ଏହି କ୍ଷଣରେ ହିଁ ଦୁହି ମା ପୁଅ ଏକ ଆରେକ କୁ କୋଳେଇ ନେଲେ ।

ଗୁଲାମ ମହମ୍ମଦ କୁନଦାଦିଙ୍କ କ'ଣ ଲାଗେ ତାହା କେହି ଜାଣନ୍ତି ନାହିଁ । ଏ ସଂପର୍କରେ ଯେତେ ମୁହଁ, ସେତେ କଥା । କିଛି ଲୋକ କହନ୍ତି ଯେ ସେ କୁନ ଦାଦିଙ୍କ ଭାଉଜଙ୍କ ଝିଅର ପୁଅ ଅଟେ । କେହି କହନ୍ତି ସେ ତାଙ୍କ ନାତି । କିନ୍ତୁ ଅଧିକ ଲୋକ କହନ୍ତି ମଖଦୁମ ସାହେବଙ୍କ ମସଜିଦ୍ ସିଢ଼ିରୁ ପାଦି ପାଇଥିଲେ ଗୁଲାମ ମହମ୍ମଦ କୁ ।

ଏ ଦୁହିଙ୍କ ମଧ୍ୟରେ ଯାହାବି ସଂପର୍କ ଥାଉ ସେଥିରେ ଆମର କିଛି ଯାଏ ଆସେ ନାହିଁ । ହଁ ଏତିକି ସଭିଏଁ ଭଲଭାବେ ଜାଣିଥିଲେ ଯେ କୁନ ଦାଦିଙ୍କ ପ୍ରାଣ ଯଦି କାହାଠାରେ ରହିଛି, ତ ସେ ହେଉଛି ଗୁଲ ମହମ୍ମଦ ।

ଆଉ ଯେବେଠୁ ତାଙ୍କର ଗୁଲ ମହମ୍ମଦ ପାକିସ୍ତାନର ଆକ୍ରମଣରୁ କାଶ୍ମୀର କୁ ରକ୍ଷା କରିବାକୁ ଥିବା ଜନସେନାରେ ଭର୍ତ୍ତି ହେଲା, କୁନ ଦାଦିଙ୍କ ଓଠରେ ଲାଗିରହିଲା ତାର ନାଁ । କେବେ ବାସୁଦେବକୁ କହନ୍ତି - ଭାଇ, ଶୁଣିଲଣି ଗୁଲ ମହମ୍ମଦ ଚିଠି ଦେଇଛି, ସେ ଗୋଟିଏ ଦିନରେ ହିଁ ସତର ଜଣ ଶତ୍ରୁଙ୍କୁ ମାରି ଦେଇଛି । ଆଉ କେବେ କହନ୍ତି - କ'ଣ କହିବି ସୋନମାଲି,ଭଗବାନ ମଂଗଳ କରନ୍ତୁ ଗୁଲ ସାହେବର ତାର ଗୋଟେ ରିପ୍ଲାଇ କାର୍ଡ଼ ଆଜି ମିଳିଛି । ଲାଗୁଛି ଯେମିତି ମୋତି ଗୁନ୍ଥା ହୋଇ ରହିଛି କାର୍ଡ଼ରେ । ଏବଂ କେବେ କହନ୍ତି - ଜମାଲମୀର, ଆଜି ଆମର ଦଶପୀଢ଼ି ମୁକ୍ତି ପାଇଗଲେ । ସୁପୁତ୍ର ହେବ ତ ଗୁଲ ମହମ୍ମଦ ଭଳି । ପୁରା କାଶ୍ମୀରକୁ ରକ୍ଷା କରୁଛି ଆଜିକାଲି ।

ଯେଉଁଦିନ ଗୁଲାମ ମହମ୍ମଦର ସେନାକୁ ଫେରିବାର ଥିଲା, ସେହିଦିନ ପୁରା ଗାଁ ରେ ଗହଳ ଚହଳ ଲାଗିରହିଥିଲା ।

ସେଦିନ ଭୋର ଭୋର ରୁ ନିଜ ନିଜ ଘରର କାମ ସାରି ପୁରୁଷ ସ୍ତ୍ରୀ, ଛୁଆ, ବୁଢ଼ା, ବୁଢ଼ୀ ସଭିଏଁ କୁନଦାଦିଙ୍କ ଚଉତରା ରେ ଏକାଠି ହୋଇଯାଇଥିଲେ । କିଛି ଲୋକ ନୈବେଦ୍ୟ ନେଇ ଆସିଥିଲେ ଓ କିଛିଲୋକ ଚାବିକ ନେଇ, କିଛି ସ୍ତ୍ରୀ ଲୋକ ନିଜ ହାତରେ ଆଚାର, ବିଭିନ୍ନ ରକମର ଚଟଣୀ ଶାଗ ଓ ଶୁଖିଲା ଶାଲଗମ ନେଇ ଆସିଥିଲେ ।

ଯେମିତି କୁନଦାଦି କବାଟ ଖୋଲିଲେ ସେମିତି ହିଁ ଭିଡ଼ରେ ଠେଲାପେଲା ଆରମ୍ଭ ହୋଇଗଲା । ପ୍ରତ୍ୟେକ ଲୋକ ଚାହୁଁଥିଲା ଯେ ତାହାର ଉପହାର ହିଁ ପ୍ରଥମେ ଗୁଲା ମହମ୍ମଦ କୁ ମିଳୁ ।

- କୁନ ଦାଦି, ଏଇ ନିଅ ଶୁଖିଲା ସାଲଗମର ତରକାରୀ, ଗୁଲାମ ମହମ୍ମଦ କୁ କହିବ ଏଇଟା ମାମୁଲି ନୁହଁ, ଫାର୍ମ ବଗିଚାର ସାଲଗମ ଅଟେ । ରାହତ୍ ଗୁଜରି ସଂକୁଚିତ ହୋଇ କହିଲା - ଏହି ସାଲଗମ୍ ତ ଗୁଲ ସାହେବ ପାଇଁ ହିଁ ଏକା ବଂଚେଇ ରଖିଥିଲି ।

- ଏହି ଶୁଖିଲା ଶାଗ ନେଇ ଯାଅ ଜୁନ ଦାଦି । ଏହି ଶାଗ ଖୁସପୁର ଗାଁର ବଗିଚାରୁ ଅଣା ହୋଇଛି । ରଜମାନ ବେଶ କହିଲା - ଗୁଲାମ ମହମ୍ମଦକୁ କହିଦେବ ଯେ ଏପରି ଶାଗ ସାରା ସହରରେ ମିଳିବା ଅସଂଭବ ।

- ଏ ଆଚାର ମଧ ନେଇଯାଅ ଦାଦି ! ବୋନପୁର ର ଅସଲି କାଶ୍ମିରୀ ଗଣ୍ଡିକୋବିରେ ତିଆରି ହୋଇଛି ।

ଆରେ ବାଦି, ଗୁଲାମ ମହମ୍ମଦକୁ ତ ଡ଼କାଅ । କ'ଣ ସେ ଏବେବେଳ ଯାଏଁ ଶୋଇଛି ? ବାସୁଦେବ ଭଟ୍ଟ କହିଲା ।

- ମୁଁ କହେ ନା ତୁ ମୂର୍ଖ ବୋଲି । ହସି ହସି ଜୁନଦାଦି ଜବାବ ଦେଲେ - ସେ କ'ଣ ଏବେବେଳ ଯାଏଁ ଶୋଇ ରହିବ । ସେତ ମୁହଁ ଧୋଇବା ପାଇଁ ନଦୀକୁ ଯାଇଛି । ଆସୁଥିବ କାହିଁକି ହରବର କିଛି ଅଛିକି ?

- ହରବର କାଇଁ ପାଇଁ ? ମୁଁ ଗୋଟିଏ ତାବିଜ ଆଣିଛିତ ପଣ୍ଡିତ ନୀଳକଣ୍ଠ ପାଖରୁ ଭାବୁଥିଲି ନିଜେ ହିଁ ତା ବେକରେ ବାଂଧିଦେବି । ସହଜଭାବରେ କହିଲା ବାସୁଦେବ ଭଟ୍ଟ ।

ଏହି ସମୟରେ ଗୁଲାମ ମହମ୍ମଦ ନଦୀରୁ ମୁହଁହାତ ଧୋଇ ଲେଉଟି ଆସିଲା । ଦେଖୁ ଦେଖୁ ଭିଡ଼ ତାହାକୁ ଘେରିଗଲା । କିଛି ଲୋକ ତାକୁ ଛାତିରେ ଜାବୁଡ଼ି ଧରିଲେ ଆଉ କିଛି ଲୋକ ତାର ମୁଣ୍ଡକୁ ଚୁମିଲେ । ଏବଂ ଯେତେବେଳେ ସେ ଫଉଜ୍ ର ପୋଷାକ ପିଂଧି ବାହାରକୁ ଚାଲି ଆସିଲା ସମସ୍ତଙ୍କ ଛାତି ଗର୍ବରେ ଫୁଲି ଉଠିଲା ।

ସ୍ତ୍ରୀ ଲୋକମାନେ ଆଶୀର୍ବାଦ ବର୍ଷା କରିବାକୁ ଲାଗିଲେ । ତୁମେ ଉନ୍ନତିର ଚରମ ସୀମାକୁ ପହଂଚି ଯାଅ । ତୁମର ଭାଗ୍ୟ ଉଚ୍ଚ ରୁ ଉଚ୍ଚ ହେଉ । ସୁଖରେ ରୁହ ଖୁସିରେ ରୁହ ।

ପୁରା ଗାଁ ତାର ସଂଗେ ସଂଗେ ବହୁତ ଦୂର ଯାଏଁ ତାହାକୁ ବିଦା କରିବାକୁ ଗଲା ଏବଂ ଯେତେବେଳେ ସେ 'ଛାୟାକୁଂଜ' ର ପାଖକୁ ପହଂଚି ଆଖିରୁ ଅଦୃଶ୍ୟ ହେବାରେ ଲାଗିଲା ସେତେବେଳେ ସଭିଏଁ ନିଜ ନିଜ ଘରକୁ ଫେରିବାକୁ ଲାଗିଲେ ।

ଆଜି ସକାଳ ହେଲା ବେଲୁ ହିଁ ପରିବେଶ କିଛି ଅସ୍ପଷ୍ଟ ଅସ୍ପଷ୍ଟ ଥିଲା । ସୂର୍ଯ୍ୟ ପୁରା ଉଇଁଲା ବେଳକୁ ଆକାଶ ବାଦଲରେ ଢ଼ାଙ୍କି ହୋଇଗଲା । ପର୍ବତ ଶ୍ରେଣୀକୁ ଢ଼ାଙ୍କି ସାରିବା ପରେ ବାଦଲ ମାଟିକୁ ଆସିଲା । ପୁଣି ପୂର୍ବଦିଗରେ ଭୟଂକର ବିଜୁଳି ଚମକିବାକୁ ଲାଗିଲା ଏବଂ ଏମିତି ଲାଗିଲା କି ମୂଷଳ ଧାରାରେ ହିଁ ବର୍ଷାହେବ । ପ୍ରାୟତଃ ଏହି ସମୟରେ ଲୋକମାନେ ନିଜ ନିଜ ଘରେ ବସି ରହନ୍ତି । କିନ୍ତୁ ଆଜି ଏଠିକାର ସବୁଲୋକ ନଦୀତଟରେ ଦଳଦଳ ହୋଇ କ'ଣ କ'ଣ ଫୁସୁରୁଫାସୁରୁ ହେଉଥିଲେ । ସମସ୍ତଙ୍କ ଚେହେରାରେ ଦୁଃଖ ଓ ଉଦାସ ଭାବ । ପୁରୁଷ ମାନଙ୍କଠାରୁ ଦୂରେଇ ଯାଇ ସ୍ତ୍ରୀ ଲୋକମାନେ ଭିତରେ ଭିତରେ ହିଁ କାନ୍ଦୁଥିଲେ ।

ଏତିକି ବେଳେ ବାସୁଦେବ ଭଟ୍ଟ ଖାଲି ପାଦରେ ଦୌଡ଼ି ଦୌଡ଼ି ଆସିଲା ଓ ଛୁଆଙ୍କ ପରି କାନ୍ଦି କାନ୍ଦି ପଚାରିଲା - କରିମ ବାବା, ମୁଁ ଏହା କ'ଣ ଶୁଣୁଛି ? ଏହା ସତ କି ? ଆମେ ତ ବରବାଦ ହୋଇଗଲୁ.... ଏହା କହୁ କହୁ ପାଟି ତାର ଖନି ମାରିଗଲା ।

ମୁହଁରେ ଅଂଗୁଳି ଚାପି ଇସାରା ରେ କରିମ କୁମ୍ଭାର କହିଲା - ଭାଇ, ଚୁପ ରୁହ । ପୁରା ଶୁଣ । ସେମିତିରେ କାମ ହେବ ନାହିଁ । ଟିକେ ଧୈର୍ଯ୍ୟ ଧର । କୁନ ଦାଦିଙ୍କ ଅବସ୍ଥା କିଭଳି ହେବ ଥରେ ଭାବ ତ ? ତାଙ୍କ ପାଖକୁ କେମିତି ଖବର ପହଂଚିବ ।

ଏହା କାହିଁକି ହେଲା ? କିଏ ଚାହିଁଲା ଏଟା ? ଏହା ହେଲା କେମିତି ? ବାସୁଦେବ ଭଟ୍ଟ ହତାଶିଆ ସ୍ୱରରେ କହିଲା ରହିରହି ।

କିଏ ଚାହିଁଲା ? ଆମର ଦୁର୍ଭାଗ୍ୟ । କାଲି ଜିବ୍‌ବାର ଡ଼ାକବାଲ ଆସିଲା ଓ ସେ ମୋ ହାତରେ ଗୁଲ ସାହେବର ଚିଠି ଦେଲା । କିଛି ବି ଲେଖା ନଥିଲା ସେଥିରେ । ଦାଦି ଏଠାରୁ ଯେମିତି ପଠାଇଥିଲେ ସେମିତି ଖାଲି ଫେରି ଆସିଲା । ......ଗୁଲାମ ମହମ୍ମଦର ରହଣୀରୁ । କରୀମ କୁମ୍ଭାର ୟାପରେ ଆଉ ଆଗକୁ କିଛି କହି ପାରିଲା ନାହିଁ ।

ଛାତିକୁ ଦଂଭ ଧରାଇ ସଭିଏଁ ଗୋଟିଏ ଗୋଟିଏ ହୋଇ କୁନ ଦାଦିଙ୍କ ଚଉତରାରେ ପହଂଚିଲେ । ଆଜି ମଧ ସେ ଯଥାବିଧି ନିଜ ଗାଈଙ୍କୁ ଚାରା ଖୁଆଉ ଥିଲେ ଗୁହାଳରେ । ତୁମକୁ ଲାଜ ଲାଗୁ ନାହିଁ, ଆଉ କେତେବେଳ ଏଠି ବସି ରହିବି ? ଯେବଠୁ ମୋର ପୁଅ ତାର କାମକୁ ଗଲାଣି ତୁମେ ମଧ ଅନଶନ କରିବା ଆରମ୍ଭ କରିଦେଲଣି । କିନ୍ତୁ ଭାବ, ଏମିତି ହେଲେ କାମ ଚଳିବ କେମିତି ? ଗୁହାଳରେ ଗାଈଙ୍କ ସହ କଥା ହେଉଥିଲେ କୁନ ଦାଦି । ସେତେବେଳେ ହିଁ ସେ ବାହାରୁ କିଛି ଶବ୍ଦ ଶୁଣି ପାରିଲେ ।

ଭିତରୁ ହିଁ ପଚାରିଲେ କୁନଦାଦି - କ'ଣ ବାସୁଦେବ କି ? ଏତେ ସକାଳୁ ତୁ କୁଆଡ଼େ ଚାଲି ଆସିଲୁ ? ତାପରେ ସିଏ ଗୁହାଳରୁ ପାଟି ଭଢ଼ ଭଢ଼ କରି ବାହାରି ଆସିଲେ .... ଗୁଲାମ ମହମ୍ମଦ ତ ଏଇ ଗାଈକୁ ମୁଣ୍ଡରେ ବସେଇଛି ଆଉ....

ଏତିକି କହୁ କହୁ ହଠାତ ଚୁପ ହୋଇଗଲେ କୁନଦାଦି । ପୁରା ଗାଁ ଟାକୁ ସେଠାରେ ଜମା ହୋଇଥିବା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସେ ପଚାରିଲେ - କ'ଣ, କଥା କ'ଣ ? ଗଣ୍ଡଗୋଳ ତ କରିନାହଁ କେଉଁଠି ? କହୁନ କାହିଁକି ?

କିନ୍ତୁ କେହି କିଛି କହି ପାରିଲେ ନାହିଁ । ସଭିଏଁ ଠିଆ ହୋଇ ରହିଲେ ।

ଆରେ କୁହ, କଥା କ'ଣ ? ପାଟିରେ ଜିଭ ନାହିଁକି ? କୁନ ଦାଦି କିଛି ଭୟମିଶ୍ରିତ କଣ୍ଠରେ ପଚାରିଲେ ତାଙ୍କ ମନରେବି କିଛି ସଂଦେହ ପଶି ସାରିଥିଲା ।

ବାସୁଦେବ ଭଟ୍ଟ ଶେଷରେ ମୁହଁ ତଳ କରି କହିଲା - କ'ଣ କହିବି ଦାଦି... କିଛି କହି ହେଉନାହିଁ । ଏତିକି କହି ସେ କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲା । ସମସ୍ତଙ୍କ କୋହ ମଧ ବନ୍ଦ ହୋଇଗଲା ।

ପୁଣି ବାସୁଦେବ ଭଙ୍ଗ ଦଂଭ କରି ଧୀର ଭାବରେ ଫେରି ଆସିଥିବା ପ୍ରତ୍ୟୁତ୍ତର ପତ୍ର ବାହାର କରି ଜୁନଦାଦିଙ୍କ ହାତକୁ ବଢ଼ାଇ ଦେଉ ଦେଉ କହିଲା - ଏଇଟା କାଲି ମିଳିଲା, କିନ୍ତୁ ଏହା ଖାଲି ଅଛି । କେଜାଣି !

ଜୁନଦାଦିଙ୍କ ଉପରେ ପର୍ବତ ଖସିପଡ଼ିଲା ଯେମିତି । ସେ ବହୁତ ବେଳଯାଏଁ ସ୍ଥିର ରହିଗଲେ । ହାତକୁ ହାତ ବୁଲି ଫେରି ଆସିଥିବା ଚିଠିଟି ମୋଡ଼ା ମୋଡ଼ି ହୋଇଯାଇଥିଲା । ଧୀରେ ଧୀରେ ସେ ଚିଠିକୁ ଠିକ୍ କଲେ ଓ ତାହାକୁ ବାରମ୍ବାର ଓଲଟାଇ ଦେଖିବାକୁ ଲାଗିଲେ ।

ଚାରିପଟେ ନୀରବତା ଛାଇଯାଇ ଥିଲା । ଲାଗୁଥିଲା ପକ୍ଷୀସବୁ ବି କାକଳି ବନ୍ଦ କରି ଦେଇଛନ୍ତି । କେବଳ ଗାଁ ନଦୀର ଧୀର ଶବ୍ଦଟିଏ ଆସୁଥିଲା । ଲାଗୁଥିଲା ଇଦ୍ ଦିନ, କେଉଁ ଏକ ସନ୍ଥଙ୍କ କବରାରେ ଆପଣାର ପ୍ରିୟଲୋକ ବିଚ୍ଛେଦରେ କେହି ଜଣେ ବିଳାପ କରୁଛି ।

ଜୁନ ଦାଦିଙ୍କ ଚେହେରା ମଳିନ ପଡ଼ିଯାଇଥିଲା ଆଉ ସେତେବେଳେ ତାଙ୍କର ବୁଢ଼ୀ ଚେହେରାର ଲୋଚା କୋଚା ପଣ ସ୍ପଷ୍ଟ ହୋଇଯାଇଥିଲା । ନୀରିହ ଆଖିରେ ଚମକୁଥିଲା ଦୁଇ ତିନି ଟୋପା ନୀରିହ ଲୁହ ।

ଅଚାନକ ଜୁନ ଦାଦି ଅଟ୍ଟହାସ୍ୟ କରିବାକୁ ଲାଗିଲେ । ପାଗଳଙ୍କ ଭଳି । ଲୋକମାନେ ବିସ୍ମିତ ଓ ଆଶଙ୍କିତ ହୋଇ ଦେଖିବାକୁ ଲାଗିଲେ ତାଙ୍କୁ । ଜୁନଦାଦି କହୁଥିଲେ - କହୁ ନଥିଲି ବାସୁଦେବ, କି ତୁ ଗୋଟାଏ ମୂର୍ଖ । ଯଦି ତୋର ବୁଦ୍ଧି ଟିକେବି ଥାନ୍ତା ତ ତୁ ଆଜିଯାଏଁ ଚହସିଲଦାର ହୋଇ ନ ଥାନ୍ତୁ ? ଟିକିଏ ଅଟକି, ସମସ୍ତଙ୍କୁ ରିପ୍ଲାଇ କାର୍ଡ୍ ଦେଖାଇ ସିଏ କହିବାକୁ ଲାଗିଲେ କ'ଣ-ତୁମକୁ ଦେଖାଗଲା ନାହିଁ, ଏଠାରେ ତ କିଛି ଲେଖା ହୋଇଛି । ଖୋଲା ଯାଇଥିବା କାର୍ଡ଼ର ଭାଂଗ ମାନ ଦୂରରୁ ପେନସିଲର ଚେଢ଼ା ମେଢ଼ା ରେଖା ଦେଖାଯାଉଥିଲା । ଆଉ ଜୁନ ଦାଦି ଘୋଷଣା କରୁଥିଲେ : ଗୁଲ ମହମ୍ମଦ ମତେ ସହରକୁ ଆସିବା ପାଇଁ କହିଛି ।...... ନାରୀ ସେନାରେ ଭର୍ତ୍ତି ହେବା ପାଇଁ, ଏବଂ ସଂଗେ ସଂଗେ ସେ ନିଜ କୁଡ଼ିଆ ଭିତରକୁ ଚାଲିଗଲେ ଯେଉଁଦିନ ଜୁନ ଦାଦି କାଠ ତିଆରି ବଂଧୁକ ଧରି ସଫାଧଳା ଲଂବା କୁର୍ତ୍ତା ପିଂଧି ଗାଆଁରୁ ବାହାରିଲେ, ସେହିଦିନ, ପୁରା ଗାଁର ହୃଦୟ ସାରା ଦୁଃଖ ପ୍ରସରି ଯାଇଥିଲା । ସେହିଦିନ ବୋନପୁର ଗାଁ ରେ ନାଚ କେହି ଛୁଆ ଖେଳିବା ଦେଖାଯାଇଥିଲା ଏବଂ ନା ତ କେହି କାଉ ଚିନାର ଗଛରେ କା' କା' କରିବା ଦେଖା ଯାଉଥିଲା ।

***ଭାଷାନ୍ତର : ସଂଜୟ କୁମାର ମିଶ୍ର***

ଫକୀରମୋହନ ଥରେ ଉତ୍କଳ ସାହିତ୍ୟର ସମ୍ପାଦକ ବିଶ୍ୱନାଥ କରଙ୍କୁ ଲେଖିଥିଲେ 'ଗଳ୍ପ ଲେଖିବା କିଛି ଗୁରୁତର କାର୍ଯ୍ୟ ନୁହେଁ, ଜଗତ ଗଳ୍ପମୟ ।' ଅଥଚ ଫକୀରମୋହନଙ୍କ ଆଗରୁ ଓଡ଼ିଆ ଭାଷାରେ ଆଦୌ ଗଳ୍ପ ଲେଖା ହେଉ ନ ଥିଲା । ରାଜାରାଣୀଙ୍କ କାହାଣୀ ଥିଲା, ଶୁଆ ସାରୀ କାହାଣୀ ଥିଲା, କଥାକୁହା ପଶୁପକ୍ଷୀ ଥିଲେ, ଜିଦ୍‌ଖୋର୍ନ୍ନି, ରାଜାପୁଅ, ମଉନାବତୀ, ରାଜକୁମାରୀ, ମନପବନ ଘୋଡ଼ା, କୁହୁକ କଠାଉ, ମନ୍ତ୍ରଧୂଳି ଓ ଏମିତି ଅନେକ ଅନେକ । ଏସବୁ ମିଶି ଗୋଟିଏ କଳ୍ପନାର ଜଗତ ଥିଲା, ଆମେ ଦେଖୁଥିବା ଜଗତ ଠାରୁ ଖୁବ୍ ଦୁରରେ କେଉଁଠି, ସେ କାହାଣୀର ଜଗତ । ରାଜ ଦରବାରରେ ଗଳ୍ପସାଗରମାନେ ଓ ସଂଧ୍ୟା ହେଲେ ଘରେ ଆଈ ମା'ମାନେ ସେ ଜଗତର ମିଠା ମିଠା କଥା କହି ଥରେ ଥରେ ଆମକୁ ସେଠାକୁ ନେଇ ଯାଉଥିଲେ । ତାହାହିଁ ଥିଲା ଆମ ପ୍ରାଚୀନ କାହାଣୀର ଜଗତ । କିନ୍ତୁ ଫକୀରମୋହନ ଆମ ଆଗରେ ନୂଆ ଏକ ଜଗତର କଥା କହିଲେ, ଆଉ ସେ କହିଲେ ଏଇ ଜଗତ ବି ଗଳ୍ପମୟ, ଯେଉଁଠି ଆମେ ବି ଜଣେ ଜଣେ ଚରିତ୍ର । ଆମ ସୁଖ ଦୁଃଖ ହିଁ ଗଳ୍ପର କାହାଣୀ । ଫକୀରମୋହନଙ୍କୁ ସେଦିନ ସେଥିପାଇଁ ମନେହେଲା, ''ଗଳ୍ପ ଲେଖିବା କିଛି ଗୁରୁତର କାର୍ଯ୍ୟ ନୁହେଁ, ସାରା ଜଗତ ଗଳ୍ପମୟ ।''

ଫକୀରମୋହନଙ୍କ ପ୍ରଥମ ଗଳ୍ପ 'ରେବତୀ' ପ୍ରକାଶିତ ହୁଏ ୧୮୯୮ ମସିହାରେ ଆଜିଠୁ ଠିକ୍ ୧୦୨ ବର୍ଷତଳେ । ସେ ଦିନଠୁ ଆଜିଯାଏ ଅଗଣିତ ଗାଳ୍ପିକଙ୍କ ଦ୍ୱାରା ଅସଂଖ୍ୟ ଗଳ୍ପ ଲେଖାଯାଇଛି । କାହାଣୀର କାଳ୍ପନିକ ଜଗତ ଠାରୁ ବିଦାୟ ନେଇ ପାଠକ ପହଞ୍ଚିଛି ଗାଳ୍ପିକ ଦେଖାଉଥିବା ସାମାଜିକ ଜଗତରେ । ଆପଣାକୁ ଓ ନିଜ ପରିଜନଙ୍କୁ ସେ ଜଗତରେ ଭେଟି ଚକିତ ହୋଇଛି ପାଠକ । ନିଜର ସମାଜରେ, ନିଜ ଭାଇ, ବନ୍ଧୁ, କୁଟୁମ୍ବଙ୍କ ଭିତରେ, ଏମିତିକି ନିଜ ଭିତରେ ଏତେ କଥା ଅଜଣା ଥିଲା ? ପ୍ରତି ନିୟତ ଏତେ ନୂଆ ନୂଆ ଘଟଣା ଘଟୁଥିଲା, ଘଟି ଘଟି ଚାଲିଥିଲା ? ଏ ସମସ୍ତ ସାମାଜିକ ଓ ଐତିହାସିକ ଘଟଣାର ଅର୍ଥ ଖୋଜୁ ଖୋଜୁ ସେ ସବୁ ସମସ୍ୟା ଓ ତା'ର ସମାଧାନ ଖୋଜୁ ଖୋଜୁ ପୁଣି ତାକୁ ଅସରନ୍ତି ସମୟର ଧାରାରେ ପରଖୁ ପରଖୁ ବିତି ଗଲାଣି ଗତ ଶହେ ବର୍ଷର ଓଡ଼ିଆ ଗାଳ୍ପିକତା । ଗତ ଶହେ ବର୍ଷର ଓଡ଼ିଆ ଗଳ୍ପ ଆବେଗ ଓ ଆଦର୍ଶ, ସମାଜ ଓ ସଂଘର୍ଷର କଥା କହି କହି କ୍ଳାନ୍ତ ହେଲାଣି ।

ଗାଳ୍ପିକ ଫକୀରମୋହନ ସେ କାଳର କେତେକ ସାମାଜିକ ମଣିଷଙ୍କୁ ରୂପାନ୍ତରିତ କଲେ ଗଳ୍ପ ଜଗତର ଚରିତ୍ର ଭାବରେ । ଏଇ ମଣିଷମାନଙ୍କୁ ବାଛିବା ବେଳେ ଫକୀରମୋହନ ବୋଧହୁଏ ମନେକଲେ ଏମାନେ ହିଁ ଏ କାଳର ଉପଯୁକ୍ତ ଗଳ୍ପ ପୁରୁଷ, ଏମାନଙ୍କ କାମ ହିଁ ଏ କାଳର ଇତିହାସ ପାଇଁ ସ୍ମରଣଯୋଗ୍ୟ ଘଟଣା । ଏକ ରାଜନୈତିକ ଇତିହାସରେ ଯେମିତି ରାଜାମାନେ ଓ ତାଙ୍କ କାମ ସବୁ ଲିପିବଦ୍ଧ ହୋଇ ରୁହେ; ସେ ଦିନଠୁ ଓଡ଼ିଆ ସମାଜର ବି ସେମିତି ନୂଆ ଏକ ଇତିହାସ ଲେଖା ଆରମ୍ଭ ହେଲା । ପ୍ରତିଟି ଗାଳ୍ପିକ ଆପଣା ରୁଚିରେ ସେ ସମାଜ ଓ ସେ ସମୟର ନାୟକ ନିର୍ବାଚନ କଲେ । ତାଙ୍କୁ ଅମରତାର ଇତିହାସ ବହିରେ ସାଇତି ରଖିବା ପାଇଁ ଗଳ୍ପାୟିତ କଲେ । ଆଜି ଶହେ ବର୍ଷର ଓଡ଼ିଆ ଗଳ୍ପର ପ୍ରଥମ ପ୍ରାସଙ୍ଗିକତା ବୋଧହୁଏ ଏଇଠି : ପାଠକ ପାଇଁ ଏବେ ରହିଛି ଗତ ଶହେ ବର୍ଷର ଓଡ଼ିଆ ଗଳ୍ପର ସମସ୍ତ ସାମାଜିକ ଓ ସାଂସ୍କୃତିକ ଘଟଣା ପାଇଁ ଭିନ୍ନ ଭିନ୍ନ ପାଠ୍ୟ । ସବୁ ସମୟ ଖଣ୍ଡ ପାଇଁ ଭିନ୍ନ ଭିନ୍ନ ଗାଳ୍ପିକ- ଐତିହାସିକଙ୍କ ସ୍ୱତନ୍ତ୍ର ବ୍ୟାଖ୍ୟା ।

କାହାଣୀ ହେଉ ବା ଗଳ୍ପହେଉ ମୂଳତଃ ତାହା କେତୋଟି ଘଟଣାର ସମାହାର । ଏସବୁ ଘଟଣା, ସମୟ ସ୍ରୋତର କେଉଁ ଏକ ଐତିହାସିକ ବିନ୍ଦୁରେ ଘଟିଛି ବୋଲି ଗାଳ୍ପିକ ଉପସ୍ଥାପିତ କରେ । ପ୍ରାଚୀନ କାହାଣୀରେ ଏହାର ଉପସ୍ଥାପନ କୌଶଳ ଥିଲା ଘଟିଥିବା ଘଟଣାର ଏକ ବିବରଣୀ ମାତ୍ର । ଜଣେ ପ୍ରଗଲ୍‌ଭ ବକ୍ତା ଅତୀତର ଘଟଣାକୁ ସମୟକ୍ରମେ ସାମ୍ନାର ଶ୍ରୋତା ପାଇଁ କହିବା । ଅଥଚ ଆଧୁନିକ ଗଳ୍ପ ସେମିତି ବକ୍ତବ୍ୟ ନୁହେଁ । ସମୟ ଭୂମିର ପରିବର୍ତ୍ତନ କରି ଗାଳ୍ପିକ କହିପାରେ ନିଜ ଜୀବନ, ନିଜ କାଳ, ଏମିତି ଅନେକ କାଳାନ୍ତର କଥା । ଏଣୁ ଆଧୁନିକ ଗଳ୍ପ କଥନ ଚାତୁରୀରେ ଅମିତ ସମ୍ଭାବନାମଣ୍ଡିତ । ଅଥଚ ପ୍ରାଚୀନ ବିବରଣୀ ସର୍ବସ୍ୱ କାହାଣୀ ଉଭୟ ବକ୍ତା ଓ ଶ୍ରୋତାର ସାମର୍ଥ୍ୟ ଦ୍ୱାରା ନିୟନ୍ତ୍ରିତ । ଆମ ପ୍ରାଚୀନ କାହାଣୀ ଏଣୁ ଚିର ପରିବର୍ତ୍ତନଶୀଳ । କେତେବେଳେ ଶ୍ରୋତାର ସାମର୍ଥ୍ୟ ପାଇଁ ତ କେତେବେଳେ ନୂତନ ବକ୍ତାର ସମାଜ ସଚେତନତା ପାଇଁ । ଆଧୁନିକ ଗଳ୍ପ ଅଥଚ ଆମ ଆଗରେ ତୋଳିଧରେ ଜଣେ ଗାଳ୍ପିକର କଥନଶୈଳୀ ଦ୍ୱାରା ସ୍ୱାକ୍ଷରିତ ଗୋଟିଏ ସ୍ଥିର ପାଠ୍ୟ । ଶହେ ବର୍ଷର ଓଡ଼ିଆ ଗଳ୍ପ ଏଣୁ କେତେଶହ ଗାଳ୍ପିକଙ୍କ କଥନଶୈଳୀର ଲିଖିତ କେତେ ହଜାର ସ୍ଥିରପାଠ୍ୟ । ସମସ୍ତ ଚାରିତ୍ରିକ ବିକଳ୍ପତା, ସମ୍ଭାବିତ ଘଟଣା ଓ ବ୍ୟତିକ୍ରାନ୍ତ କଥନଶୈଳୀର ସମ୍ଭାବନା । ଏବେ ଆଉ ଗଳ୍ପପାଠକ ପାଇଁ ନାହିଁ । ଗତ ଶହେ ବର୍ଷର ଓଡ଼ିଆ ଗଳ୍ପରେ ପାଠକ ପାଇଁ ଏହା ଆଉ ଏକ ଉପଲବ୍ଧି ।

ପ୍ରାଚୀନ କାହାଣୀର ବଢ଼ନ୍ତା ଚରିତ୍ରମାନେ ଆଧୁନିକ ଗଳ୍ପରେ ଏବେ ସୁନିର୍ଦ୍ଦିଷ୍ଟ ଓ ସ୍ଥିର । ଯଦିଓ ଗୋଟିଏ ଚରିତ୍ରକୁ ନେଇ ଭିନ୍ନ ଭିନ୍ନ ଗାଳ୍ପିକ ଗଳ୍ପ ଲେଖିବାର ନଜିର ଆସ୍ତେ ଆସ୍ତେ ଅଧିକରୁ ଅଧିକ ଦେଖିବାକୁ ମିଳୁଛି ଯେମିତି ଫକୀରମୋହନଙ୍କ 'ରେବତୀ' ଗଳ୍ପକୁ ନେଇ ଜଗଦୀଶ ମହାନ୍ତି, ହୃଷୀକେଶ ପଣ୍ଡା ଓ ଅନ୍ୟମାନଙ୍କର ରେବତୀ ଗଳ୍ପ । ଏଗୁଡ଼ିକ କୌଣସି ଦୃଷ୍ଟିରୁ ଫକୀରମୋହନଙ୍କ 'ରେବତୀ'ର ବିକଶିତ ରୂପ ନୁହେଁ । ଅଧିକନ୍ତୁ ନୂଆ ଏକ ସମୟ ଭୂମିରେ ଏକ ଚରିତ୍ରର ଭାଗ୍ୟରେ ଘଟିଥିବା ରେବତୀପଣର ବ୍ୟାଖ୍ୟା । ଶହେବର୍ଷର ଓଡ଼ିଆ ଗଳ୍ପରେ ଆସିଥିବା ଚରିତ୍ର ସବୁ ଏଣୁ କେହି କାହାର ସମାନ ବା ଅନୁପୂରକ, ପ୍ରତୀପ ବା ସମାନ୍ତରାଳ ନୁହଁନ୍ତି, ଅଧିକନ୍ତୁ ସମାଜରେ ଗାଳ୍ପିକ ଭେଟିଥିବା ବା ଭେଟିବାକୁ ଆଶା ରଖୁଥିବା ଅନ୍ୟ ବ୍ୟକ୍ତିଟିଏ, ଯାହାକୁ ଇତିହାସର ଅମରତା ପ୍ରଦାନ ପାଇଁ ସେ ବ୍ୟଗ୍ର ।

ଆଉ ଦୁଇଟି କଥା କହି ଏ ଆଲୋଚନାକୁ ସମାପ୍ତ କରିବା । ପ୍ରଥମତଃ ଶହେ ବର୍ଷ ଭିତରେ କାହାଣୀ ପରି କଥନରେ ଆସିଥିବା ପରିବର୍ତ୍ତନ ଓ ତା'ର ସମ୍ଭାବ୍ୟ କାରଣ । ଆଉ ଦ୍ୱିତୀୟତଃ ମଣିଷ ଜୀବନରୁ ସରି ସରି ଆସୁଥିବା ଗଳ୍ପ ସତ୍ତା ଓ ତା'ର ରୂପାନ୍ତରଣ ପାଇଁ ଗାଳ୍ପିକମାନଙ୍କ ପ୍ରୟାସ । ଉଭୟ କଥା, ଓଡ଼ିଆ ଗାଳ୍ପିକତାରେ ଦୁଇଟି ନୂତନ ପ୍ରବୃତ୍ତି । ଗଲା କେତେ ଦଶନ୍ଧି ଏଥିପାଇଁ ସମସ୍ତ ସଚେତନ ଗାଳ୍ପିକ ବ୍ୟସ୍ତ, ବେଳେ ବେଳେ ବିବ୍ରତ ବି ।

ପ୍ରାଚୀନ କାଳର କାହାଣୀକାରମାନେ ଶୈଳୀ ପାଇଁ ଆଦୌ ବ୍ୟସ୍ତ ନଥିଲେ । ସେମାନେ ଜାଣିଥିଲେ ଶେଷରେ ଲୋକସ୍ମୃତିରେ କାହାଣୀଟିଏ ହିଁ ବଂଚିବ । ଅଥଚ ଫକୀରମୋହନଙ୍କଠୁ ଆଜିଯାଏ ଲେଖା ସମସ୍ତ ଓଡ଼ିଆ ଗଳ୍ପ ମୂଳତଃ ପାଠଯୋଗ୍ୟ । ଆଜିର ହେଉ ବା ଅନାଗତ କେଉଁ ଏକ ସମୟର ପାଠକ ପାଇଁ ହେଉ ତାହା ଲିଖିତ । ଗାଳ୍ପିକଙ୍କରୁ ଏଇ ପାଠକ ସଚେତନତା ଗଳ୍ପକୁ ଅଧିକ କାବ୍ୟିକ ଓ ଶୈଳୀ ସର୍ବସ୍ୱ କରିବା ପାଇଁ ପ୍ରବର୍ତ୍ତାଇଛି । ଫଳରେ ଗଳ୍ପ ବି ହୋଇପଡୁଛି କବିତା ପରି ଏକ ଶବ୍ଦ ଓ

ଅର୍ଥର କାରୁକର୍ମ । ଓଡ଼ିଆ ଗାଳ୍ପିକତାର ଏମିତି ଏକ କାଳରେ ଏଇ ଘଟଣାଟି ଘଟିଛି ଯେ ଏହାର ଭିନ୍ନ ଏକ କାରଣ ବି ଖୋଜି ହେବ । କହି ହେବ, ସାମାଜିକ ସମ୍ପର୍କ, ମାନବିକ ଆବେଗ ଓ ଦୁଷ୍ପ୍ରାପ୍ୟ ଆଦର୍ଶର କଥା କହି କହି କ୍ଳାନ୍ତ ହେଲାପରେ ଓଡ଼ିଆ ଗାଳ୍ପିକମାନେ ଗଳ୍ପ କ୍ଷେତ୍ରରେ ନୂତନ ପରୀକ୍ଷା ନିରୀକ୍ଷା ପାଇଁ ଆଗ୍ରହୀ । ଅଥଚ ସତକଥା ବୋଧହୁଏ, ନିଆରା କାହାଣୀ ଓ ଚରିତ୍ର ଖୋଜିବାର କୁଣ୍ଠାରୁ ଗାଳ୍ପିକମାନେ ନୂତନ ଶୈଳୀ ସର୍ବସ୍ୱ ପ୍ରତିଗଳ୍ପ, ଅଣୁଗଳ୍ପ, ଆଭାସ ଗଳ୍ପ ଏମିତିକି ଅଗଳ୍ପ ଲେଖିବା ପାଇଁ ବି ଇଚ୍ଛୁକ ।

ପୁଣି ଆଉ କେତେଜଣ ଗାଳ୍ପିକ ନିଆରା କାହାଣୀ ଓ ଚରିତ୍ର ସୃଷ୍ଟି ପାଇଁ ନୂଆ ଏକ ବାଟର ସନ୍ଧାନରେ । ଫକୀରମୋହନ ଆମକୁ କାହାଣୀର କାଳ୍ପନିକ ଜଗତରୁ ଆମନ୍ତ୍ରଣ କରି ଆଣିଥିଲେ ଆମର ସାମାଜିକ ବାସ୍ତବ ଜଗତକୁ । ନୂତନ ପୀଢ଼ିର ଏହି ଗାଳ୍ପିକମାନେ ମନେକରନ୍ତି ସେଇ କାଳ୍ପନିକ ଜଗତରେ ହିଁ ରହିଛି ଅଧିକ ଜାଦୁଗରୀ ବାସ୍ତବତା । କଳ୍ପନା ଓ ବାସ୍ତବ ଉଭୟ ସୀମା ଭୁଲିଯାଇ ପାଠକକୁ ସେମାନେ କହନ୍ତି, ବୃହତ୍ତର ପରାବାସ୍ତବତାର କଥା । ମଣିଷ ଜୀବନକୁ ଗତାନୁଗତିକତା ଓ ଯାନ୍ତ୍ରିକତା ଯେତେବେଳେ ଆବେଗ ଓ ଆଦର୍ଶପ୍ରବଣ କାହାଣୀ ପାଇଁ ଉନ୍ମୁଖ ରଖିପାରୁ ନାହିଁ ସେମାନେ ମନେକରନ୍ତି କାଳ୍ପନିକ ଓ ସାମାଜିକ ଜଗତର ମଧୁର ସମନ୍ୱୟ ହିଁ ଆଧୁନିକ ଗଳ୍ପର ନୂତନ ଭୂମି । ମଣିଷ ଜୀବନରୁ ସରି ସରି ଆସୁଥିବା ଗଳ୍ପସତ୍ତାର ନୂତନ ରୂପାନ୍ତର ସମ୍ଭବ ହେବ ଏଇ ଭୂମିରେ ।

ଓଡ଼ିଆ ଗଳ୍ପର ଶହେ ବର୍ଷ ଯେମିତି ଏକ ଶତାବ୍ଦୀ ବୃତ୍ତ । ଆମେ ଆରମ୍ଭ କରିଥିଲେ ଆମର ନୂତନଗଳ୍ପ, କାଳ୍ପନିକ ପରୀ କାହାଣୀର ଜଗତ ଠାରୁ ଦୂରରେ ରହି ନୂଆ ଏକ ବାସ୍ତବ ସାମାଜିକ ଜଗତର କାହାଣୀକୁ ଲେଖି ରଖିବା ପାଇଁ । ଅଥଚ ଆମ ଗଳ୍ପର ଦ୍ୱିତୀୟ ଶତାବ୍ଦୀ ଆରମ୍ଭ ହେବ ପରୀ କାହାଣୀର ଜାଦୁଗରୀ କଳ୍ପନା ଓ ବାସ୍ତବ ସମାଜ ପ୍ରତି ଗାଳ୍ପିକର ଅସୀମ ପ୍ରତିବଦ୍ଧତାର ମଧୁର ସମ୍ମିଶ୍ରଣରୁ । ଏବେ ବୟସ୍କ ପାଠକଙ୍କ ପାଇଁ ଲେଖାହେବ ଶିଶୁ କାହାଣୀ । ଅଥଚ ଶିଶୁ ସୁଲଭ ବିମଳ କଳ୍ପନା ସେଠି ନଥିବ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛିନାହିଁ । ଏମିତି ଏକ କାଳରେ ଯଦି କେହି ଜଣେ ନୂତନ ଗାଳ୍ପିକ ଯଦି କୌଣସି ଏକ ସମ୍ପାଦକଙ୍କୁ ଲେଖନ୍ତି : 'ଗଳ୍ପ ଲେଖିବା ଏକ ଗୁରୁତର କାର୍ଯ୍ୟ । ସାରା ଜଗତ ଗଳ୍ପମୟ । ଅଥଚ ସବୁକଥା ଆଗରୁ ସୁଲିଖିତ । ଏଣୁ ନୂତନ ଗଳ୍ପପାଇଁ ମତେ ଖୋଜିବାକୁ ହେଉଛି ଗଦା ଗଦା ଇତିହାସ ବହିରୁ ସୁନ୍ଦର ଘଟଣା, ପରୀ କାହାଣୀମାନଙ୍କରୁ ଶକ୍ତିଶାଳୀ ଗଳ୍ପାଣୁ, ବିଭିନ୍ନ ସାମାଜିକ ବିଜ୍ଞାନ ବହିରୁ ନୂତନ ଚିନ୍ତା ଉଦ୍ରେକକାରୀ ଜ୍ଞାନ । ମତେ ଆଉ କିଛିଦିନ ସମୟ ଦିଅନ୍ତୁ, ମହାଶୟ, ଗଳ୍ପ ଲେଖିବା ଏବେ ଯେଣୁ ରୀତିମତ ଗୋଟିଏ କୋଲାଜ୍ ।'

X X X

ରେବତୀ ଲେଖାର ୧୦୦ ବର୍ଷ ପୂରିଗଲାବେଳେ ଆମେ ସମସ୍ତେ ତାର ଐତିହାସିକ ପ୍ରାସଙ୍ଗିକତା କଥା ମନେ ପକେଇଥିଲୁ । ସେତେବେଳେ ସ୍ୱତଃ ଆମକୁ ଅପରଭାରତୀୟ ଭାଷାମାନଙ୍କରେ ଲିଖିତ ପ୍ରଥମ କ୍ଷୁଦ୍ରଗଳ୍ପର କଥା ମନକୁ ଆସିଗଲା । ଖୋଜା ଲୋଡ଼ା ଚାଲିଲା । ମହାଭାରତୀୟ ଦୃଶ୍ୟପଟରେ ଆମ ରେବତୀକୁ ପ୍ରତିସ୍ଥାପିତ କରି, ତାର ମୂଲ୍ୟ କଳନା କରିବା ପାଇଁ ଗୋଟିଏ ଝୁଙ୍କ ବି ଲାଗିଗଲା । ଆମ ରେବତୀ ପରି ଅପରଭାଷାର 'ଅନ୍ୟ ରେବତୀ ସବୁ' ସମାନ କାଳର, ସମାନ ସାମାଜିକତାର କିମ୍ବା ସାମାଜିକ ଆବଶ୍ୟକତାର, ଏମିତି କି ସମାନ ଜୀବନବୋଧର ବି ସାଂସ୍କୃତିକ ଉତ୍ପାଦନ ନୁହନ୍ତି । କବିଗୁରୁ ରବିନ୍ଦ୍ରନାଥଙ୍କ 'ଭିକାରୁଣୀ' (୧୮୭୭) ଠୁ ଭଗବତ ପ୍ରସାଦ ସାଠେଙ୍କ

ମଙ୍ଗତାର ପାଣିଚକ (୧୯୫୦) ଯାଏ ଦୀର୍ଘ ୭୪ ବର୍ଷର ସମୟ ଭୂମିରେ ଏସବୁର ସୃଷ୍ଟି । ସମୟ ଯେଉଁ ରୂପାନ୍ତରଣକାରୀ ଶକ୍ତି ଓ ସାମର୍ଥ୍ୟରେ ଏ ପୃଥିବୀକୁ ଚିରକାଳ ପରିବର୍ତ୍ତନ କରିଚାଲିଛି । ଏ ସୃଷ୍ଟି ସବୁରେ ତାର ଚିହ୍ନ ରହିବା ସ୍ୱାଭାବିକ । ଏମାନଙ୍କୁ ଏଣୁ ତୁଳନା କରି ଏକୁଁ ଆରେକକୁ ଶ୍ରେଷ୍ଠ ବିଚାରିବା ଭ୍ରାନ୍ତି ହିଁ ହେବ । ଏସବୁର ସମାନତା କେବଳ ସେଇ ଭାଷାର କଥା ଇତିହାସରେ ଏହାର ସ୍ଥାନ ଦୃଷ୍ଟିରୁ ।

ଆମ ଭିତରେ ସମସ୍ତ ଭାରତୀୟ ଭାଷା ଜାଣିଥିବା ଲୋକ ନ ଥିଲେ । ଭାରତୀୟ ଭାଷାର ପ୍ରଥମ ଗଳ୍ପ ଅନୁଦିତ ହୋଇ ବହୁବର୍ଷତଳେ ମାସିକ ହିନ୍ଦୀ ସାହିତ୍ୟ ପତ୍ରିକା 'ସାରିକା'ରେ ଧାରାବାହିକ ପ୍ରକାଶିତ ହେଉଥିବା କଥା, କେତେଜଣ ବନ୍ଧୁ ମନେପକାଇଲେ । ଏ ଅନ୍ୱେଷଣକୁ ଆହୁରି ସହଜ କରିଦେଲେ, ବଲାଙ୍ଗୀର ମାଟିର ପ୍ରଖ୍ୟାତ ସାରସ୍ୱତପୁରୁଷ ଶ୍ରୀ ଶ୍ରୀନିବାସ ଉଦ୍‌ଗାତା । ସେ ନିଜେ ଥିଲେ ସାରିକାର ସେହି ଯୋଜନାର ସହ ସଂଶ୍ଳିଷ୍ଟ । ପରବର୍ତ୍ତୀ କାଳରେ ବିଖ୍ୟାତ ହିନ୍ଦୀ ସାହିତ୍ୟିକ କମଲେଶ୍ୱରଙ୍କ ସମ୍ପାଦନାରେ ସେଇ ଗଳ୍ପ ଗୁଡ଼ିକ 'ପହଲି କହାନି' (पहली कहानी) ନାଁରେ ପୁସ୍ତକ ଆକାରରେ ପ୍ରକାଶିତ ହେବାକଥା, କବି ଉଦ୍‌ଗାତାହିଁ ଆମକୁ କହିଲେ । ସେଦିନଠୁ ଆଜିଯାଏ କମଲେଶ୍ୱରଙ୍କୁ ବ୍ୟକ୍ତିଗତ ପତ୍ରଲେଖି 'ପହଲି କହାନି' ମଗାଇବା, ବହିଟିର ରୁଚିପୂର୍ଣ୍ଣ ପ୍ରକାଶନ ପାଇଁ ସଦୟ ପରାମର୍ଶଦେବା, ଏମିତିକି ଓଡ଼ିଆ ରୂପାନ୍ତର କଲାବେଳେ ସାହାଯ୍ୟକରି ଆମକୁ କୃତଜ୍ଞ କରିଛନ୍ତି ।

''ଅନ୍ୟ ରେବତୀସବୁ'' ପୁସ୍ତକଟିର ପ୍ରକାଶନ ଅବସରରେ 'ସାରିକା'ର ତତ୍‌କାଳୀନ ସଂପାଦକ ତଥା 'ପହଲି କହାନି'ର ସଂପାଦକ ଶ୍ରୀଯୁକ୍ତ କମଲେଶ୍ୱରଙ୍କ ନିକଟରେ ଆମେ ଶ୍ରଦ୍ଧାବନତ, ଯିଏ ଭାରତୀୟ ପ୍ରଥମକାହାଣୀ ମାନଙ୍କୁ ହିନ୍ଦୀ ଭାଷାରେ ରୂପାନ୍ତର କରିବା ସ୍ୱପ୍ନ ଦେଖିଥିଲେ । ପୁଣି ଆମେ କୃତଜ୍ଞ, ସେଇ ଅନୁବାଦକମାନଙ୍କୁ ଯେଉଁମାନେ ଆପଣା ଆପଣା ଭାଷାର ପ୍ରଥମ କାହାଣୀକୁ ଭାଷାନ୍ତର କରି ସେଇ ସ୍ୱପ୍ନକୁ ସାକାର କରିଥିଲେ । ସେମାନଙ୍କର ଶ୍ରଦ୍ଧା ଓ ସ୍ୱପ୍ନହିଁ ଆଜି 'ଅନ୍ୟ ରେବତୀ ସବୁ' ପୁସ୍ତକଟିର ପ୍ରେରଣା ଉତ୍ସ । ହିନ୍ଦୀରୁ ଓଡ଼ିଆରେ ରୂପାନ୍ତରିତ କରିଥିବା ବନ୍ଧୁମାନଙ୍କୁ ଏ ଅବସରରେ ସହଯୋଗ ପାଇଁ ପରିଷଦ କୃତଜ୍ଞତା ଜଣାଉଛି ।

ସଂପାଦକ

ଜିଲ୍ଲା ଲେଖକ ପରିଷଦ, ବଲାଙ୍ଗୀର

# ଆତ୍ମଜୀବନୀ ସଙ୍କ





- ଫକୀର ମୋହନ ସେନାପତି
- ଗୁରଜାଡ଼ା ଅପ୍ପାରାଓ
- ମାଧବ ରାଓ ସପ୍ରେ
- ଲକ୍ଷ୍ମୀନାଥ ବେଜବରୁଆ
- ଭଗବତ ପ୍ରସାଦ ସାଠେ
- ଲାଲ୍‌ଚନ୍ଦ୍ ଅମରଚନ୍ଦ ଡ଼ିଙ୍ଗୋମଲ୍ ଅଡଭାଣୀ
- ସନ୍ତ ସିଂହ ସେଖୋଁ
- ମାସ୍ତି ଭେଙ୍କଟେଶ ଆୟେଙ୍ଗାର 'ଶ୍ରୀନିବାସ'
- ବେଙ୍ଗାୟିଲ କୁଞ୍ଜିରାମନ୍ ନାୟାର
- ରବୀନ୍ଦ୍ର ନାଥ ଟେଗୋର
- କ୍ୟାପଟେନ୍ ଗୋ.ଗୋ. ଲିମ୍‌ୟେ
- ସୈୟଦ୍ ଅହମଦ ଖାଁ
- ଡ.ବେ.ସୁ. ଆୟାର
- କନ୍ହୈୟାଲାଲ୍ ମାଣେକ୍‌ଲାଲ ମୁନ୍‌ସି
- ଦିନାନାଥ କୋଲ 'ନାଦିମ୍'






## ଜିଲ୍ଲା' ଲେଖକ ପରିଷଦ, ବଲାଙ୍ଗିର